

ନେହେରୁ ବାଲ ପୁସ୍ତକାଳୟ

# ମହାଶୂନ୍ୟରୁ ଉପହାର

ମୋହନ ସୁନ୍ଦର ରାଜନ୍

ଅନୁବାଦ

ଜଗନ୍ନାଥ ମହାନ୍ତି

ଚିତ୍ର

ନୀତା ଗଙ୍ଗୋପଧ୍ୟାୟ



ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ, ଇଣ୍ଡିଆ

1986 (*Saka* 1907)



ମୂଲ୍ୟ-ଟ

THE COSMIC GIFT *(Oriya)*

Published by the Director, National Book Trust, India, A-5, Green Park, New Delhi-110016 and printed at Saraswati Art Printers, 8247/2 New Anaj Mandi, Delhi-110006



# ଦରିଆ ତଳର କଥା

ଗୋଟିଏ ଭାରତୀୟ ବୁଡାଜାହାଜ ଗବେଷଣା କାର୍ଯ୍ୟରେ ଲାଗିଥାଏ । ଭାରତର ସବୁଠୁ ଦକ୍ଷିଣ ମୁଣ୍ଡ ଆଉ ଉପକୂଳଠାରୁ ଅଳ୍ପ ଦୂରରେ ପାର୍ସନଙ୍କ ପିରମାଲିଅନ । ସେଠାରେ ଜାହାଜଟି ସମୁଦ୍ରତଳ ଉଦ୍‌ଘାଟନ କରୁଥାଏ । ତା'ର ଯୁବକ କ୍ୟାପ୍‌ଟେନ୍ ଉତ୍ତମ ଓ ତାଙ୍କର ଦଳ ପାଣି ତଳର ଅଜବ ଦୁନିଆକୁ ଦେଖି ଅବାକ୍ ହେଉଥା'ନ୍ତି । ନାନା ପଦାର୍ଥ ଚିକ୍ ଚିକ୍ କରୁଥାଏ । ଭିନ୍ନ ଭିନ୍ନ ଆକାରର ପ୍ରବାଳ ପଥର ଦେଖା ଯାଉଥାଏ । ତା' ଭିତରେ କେତେ ରଙ୍ଗ ଆଉ ଆକାରର ମାଛ ଓ ଅଦ୍ଭୁତ ଜଳଜୀବମାନ ଧାଉଁଥା'ନ୍ତି ।

ହଠାତ୍ ଏକ ନିର୍ଦ୍ଦେଶ ଆସିଲା । ସବୁ ପ୍ରକାର ଗତାଗତ ବନ୍ଦ । ଗୋଟିଏ ସାମୁଦ୍ରିକ କାର୍ଯ୍ୟକ୍ରମର ଯୋଜନା କରାଗଲା ।

ଇଞ୍ଜିନ୍‌ଗୁଡିକୁ ବନ୍ଦ କରି ଦିଆଗଲା । ସମସ୍ତେ ଧୀରସ୍ଥିର ଭାବେ ଅପେକ୍ଷା କରି ରହିଲେ । ହଠାତ୍ ଉତ୍ତମ ପ୍ରବାଳ ମଧ୍ୟରେ ଗୋଟିଏ ଅଦ୍ଭୁତ ପଦାର୍ଥକୁ ଠାବ କଲେ । ଏହା ଚିକ୍‌କଣିଆ ଆଉ ଏହାର ରଙ୍ଗ ଅସାଧାରଣ । ଚଉଦିଗରେ ନାନା ପ୍ରକାର ପଦାର୍ଥ । ଏହା କୌଣସି ଜୀଇନ୍ତା ପ୍ରାଣୀ ପରି ଦେଖା ଯାଉ ନ ଥିଲା । ଭାରି କୌତୁକିଆ ତ । ଉତ୍ତମ ତାକୁ ଧରିବାକୁ ଆଦେଶ ଦେଲେ ।

ଏହି ପଦାର୍ଥଟି ଗୋଟିଏ ବଡ଼ ଉଲ୍‌କାପିଣ୍ଡ ବୋଲି ଜଣାଗଲା । ଉତ୍ତମ ଆନନ୍ଦରେ ଫୁଲି ଉଠିଲେ । ଜଳ ବା ସ୍ଥଳ ଭାଗରେ ସେ ଏପରି ଜିନିଷଟିଏ

ଆଗରୁ କେବେ ଦେଖି ନ ଥିଲେ । ମହାଶୂନ୍ୟରୁ ଉଲ୍‌କାଟି ଖସି ପାଣି ଭିତରେ କେତେ ଦିନରୁ ଥିଲେ ମଧ୍ୟ ତା'ର ଆକାର ଓ ରଙ୍ଗ ମଉଳି ନ ଥିଲା ।

ନୀରବ ନିସ୍ତବ୍ଧତା ଭଙ୍ଗ ହେଲା । ଉତ୍ତମ ପାଣି ଉପରକୁ ଉଠିଲେ । ତାଙ୍କ ବନ୍ଧୁ ଅଧ୍ୟାପକ ମାରୁତିଙ୍କୁ ଫୋନ୍ କରି ଉଲକାପିଣ୍ଡ କଥା ଜଣାଇ ଦେଲେ । ମାରୁତି କାଖଲୁର ମାନ ମନ୍ଦିରରେ କାମ କରୁଥିଲେ ।

ଅଧ୍ୟାପକ ମାରୁତି ଉଲ୍‌କାପିଣ୍ଡ କଥା ଶୁଣି ଖୁବ୍ ବିହ୍ୱଳ ହୋଇ ପଡ଼ିଲେ । ଏତେ ବଡ ଉଲ୍‌କାପିଣ୍ଡ କଥା ସେ ଆଗରୁ କେବେ ଶୁଣି ନ ଥିଲେ । ଅନୁମତି ନେଇ ଅଧ୍ୟାପକ ମାରୁତି ସେହି ଉଲ୍‌କାପିଣ୍ଡ ଉପରେ ପରୀକ୍ଷା ଚଳାଇଲେ ।

ଏକ ପ୍ରକାର ପତଳା ପଦାର୍ଥ ପରସ୍ତକୁ ପରସ୍ତ ସଫା କରି ଦେବାରୁ ଏକ ସଂଖ୍ୟା ଆକାରରେ କ'ଣ ଦେଖାଗଲା । ସେଇ ସଂଖ୍ୟାଟି 10101 ଯାହାକୁ ଅଧ୍ୟାପକ ମାରୁତି ଦେଖି ଠିକ କରି ନେଲେ ଯେ ଏହା ଏକ ପ୍ରକାର ତାର ଲେଖା । ସେ ଏହାର ଅର୍ଥ କଲେ 21 ସେଣ୍ଟି ମିଟର ଯାହାକି ମହାଶୂନ୍ୟରେ ଉଦ୍‌ଜାନର ରେଡିଓ ଗତି ।

ଏହା ମହାଶୂନ୍ୟରୁ କୌଣସି ବୁଦ୍ଧିମାନ୍ ବ୍ୟକ୍ତିଙ୍କର ଏକ ବାର୍ତ୍ତା ହୋଇ ପାରେ କି ?

ବହୁ ଦିନରୁ ପୃଥିବୀର ବୈଜ୍ଞାନିକମାନେ ତାରରେ ଏହି ପ୍ରକାର ବାର୍ତ୍ତା ପଠାଇବାରେ ଲାଗିଥିଲେ । ଏହି ତାର ଗୁଡ଼ିକ ମୌଳିକ ଗଣିତ ସମ୍ପର୍କରେ । ଲକ୍ଷ୍ୟ ଥିଲା ସେଗୁଡ଼ିକୁ ଧରି କେହି ଉତ୍ତର ଦେବେ । ମାତ୍ର କିଛି ଉତ୍ତର ମିଳି ନ ଥିଲା । ଏହା ସେଥିରୁ ଗୋଟିଏ ହୋଇ ପାରେ କି ?



## ଉଲ୍‌କା ପିଣ୍ଡର ବାର୍ତ୍ତା

ଉଲ୍‌କାପିଣ୍ଡର ଖବର ଆଉ ତା'ର ଲେଖା ସାରା ପୃଥିବୀର ସବୁ ରେଡିଓ ଷ୍ଟେସନରୁ ପ୍ରସାରିତ ହୋଇଥିଲା । ହଠାତ୍ ଏକ ଘମାଘୋଟ୍ ଆଲୋଚନା ଆରମ୍ଭ ହୋଇଗଲା । ଆମେରିକା ଘୋଷଣା କଲା ଯେ, ସେ ଏକ ସ୍ୱତନ୍ତ୍ର ମହାକାଶ ଯାନ ତିଆରି କରିବ ଆଉ କେଉଁଠି ଏହି ମହାଶୂନ୍ୟର ବାସିନ୍ଦା ମାନେ ଅଛନ୍ତି, ବାହାର କରିବ । ଅନ୍ୟ ପକ୍ଷରେ ଋଷ ଭାବିଚିନ୍ତି ଏ ଦିଗରେ ଆଗେଇବ ଆଉ ସେହିଠାର ବାର୍ତ୍ତାର ପ୍ରକୃତ ମର୍ମ ବୁଝିବା ଯାଏ ଅପେକ୍ଷା କରିବ ବୋଲି କହିଲା ।

ଅନେକେ ତାର ପଠାଇଲେ—ଏ ଦିଗରେ ଆଉ ଆଗେଇବା ବନ୍ଦ କର । ସେମାନେ ଭାବିଲେ—ଏଥିରୁ ଅନ୍ୟ ସଭ୍ୟତା ଆମର ଯନ୍ତ୍ରପାତିକୁ ପୁରୁଣା କାଳିଆ ବୋଲି କହିବେ, କିନ୍ତୁ ଅନ୍ୟମାନେ ଯୁକ୍ତି କଲେ ଯେ ଆଜି ପର୍ଯ୍ୟନ୍ତ ଜୀଇଁ ରହିଥିବା ସଭ୍ୟତା କେବେ ଖରାପ ହୋଇ ନ ପାରେ । ଏପରି ସଭ୍ୟତା ସମ୍ପର୍କରେ ଆସିଲେ ଆମର କିଛି କ୍ଷତି ହେବ ନାହିଁ, ବରଂ ଲାଭ ହେବ ।

ଅଧ୍ୟାପକ ମାରୁତି ମହାକାଶକୁ ଏକ ବାର୍ତ୍ତା ପଠାଇବା ଚେଷ୍ଟାରେ ରହିଲେ । ସେ ଏମିତି ଗୋଟିଏ ଉପାୟରେ ବାର୍ତ୍ତାକୁ ତାର କରିବେ, ଯେମିତି ବୁଦ୍ଧିମାନ ଲୋକ ପଠାଇଛନ୍ତି ବୋଲି ଜଣାପଡିବ । ସେ ବାର୍ତ୍ତାକୁ "ଅଛି—ନାହିଁ" ଧାରାରେ ପଠାଇବାକୁ ଠିକ୍ କଲେ । ବାରଟି ମୌଳିକ ସଂଖ୍ୟା 1, 2, 3, 5,7, 11, 13, 17, 19, 23, 29 ଓ 31 ସାହାଯ୍ୟରେ ଏହି ତାର ବାର୍ତ୍ତା



ପଠାଇବାକୁ ହେବ । ଏହା ସରଳ ଗାଣିତିକ ଜ୍ଞାନର ସୂଚନା ଦେଇପାରେ । ମାତ୍ର ଏହା କେବଳ ବୁଦ୍ଧିମାନ ବ୍ୟକ୍ତିଙ୍କ ପକ୍ଷେ ସମ୍ଭବପର ହେବ ।

ବାର୍ତ୍ତାଟିକୁ ଆଉ ଏକ ପ୍ରକାରେ ପଠାଇବାକୁ ମଧ୍ୟ ଚିନ୍ତା କରାଗଲା । ଉଦାହରଣ ସ୍ୱରୂପ, 19ଟି ବର୍ଗ କ୍ଷେତ୍ରରେ 29ଟି ଦଳରେ ସଜାଇ ଆଉ ''ଏକ'' ସଂଖ୍ୟାକୁ କଳାରେ ଓ ''ଶୂନ''କୁ ଧଳାରେ ରଙ୍ଗେଇ ଗୋଟିଏ ଚିତ୍ର କରାଯାଇ ପାରେ । ଏଥିରୁ ମଣିଷର ଚେହେରା, ସୌର ମଣ୍ଡଳର କାର୍ଯ୍ୟ ଓ ଅନ୍ୟ କେତେକ ଗୁରୁତ୍ୱପୂର୍ଣ୍ଣ କଥା ଜଣା ପଡ଼ିବ ।

ଠିକ୍ ସେହି ସମୟରେ ଆୟୁର୍ବିଜ୍ଞାନୀ ଗବେଷଣା ପରିଷଦର ଡାକ୍ତର ଧନ୍ୱନ୍ତରୀଙ୍କ ପାଖକୁ ଏକ ଖବର ଆସିଲା । ସେ ଥିଲେ ଜୀବ-ରସାୟନ ବିଭାଗର ମୁଖ୍ୟ । ସେ କହିଲେ—ମୁଁ ଜାଣିବାକୁ ପାଉଛି, ତୁମେ ମହାଶୂନ୍ୟକୁ ଏକ ବାର୍ତ୍ତା ପଠାଇବାକୁ ଠିକ୍ କରିଛ । ମୁଁ ଗୋଟିଏ ପରମର୍ଶ ଦେବାକୁ ଚାହୁଁଛି ।

ଡକ୍ଟର ଧନ୍ୱନ୍ତରୀ କହିଲେ ଯେ ସେ ମଣିଷର ମସ୍ତିଷ୍କର ଗଠନ ଓ କାର୍ଯ୍ୟ ସମ୍ପର୍କରେ ନୂତନ ତଥ୍ୟ ସଂଗ୍ରହ କରିବାକୁ ଚାହୁଁଛନ୍ତି । ବାହାର ଦୁନିଆରେ ବାସ କରୁଥିବା କୌଣସି ଏକ ବୁଦ୍ଧିମାନ ଜୀବଙ୍କଠାରୁ ଏହି ଉତ୍ତର ପାଇବା ପାଇଁ ପ୍ରଶ୍ନଗୁଡ଼ିକ ଠାର କରି ପଠାଯାଇ ପାରିବ କି ?

ଅଧ୍ୟାପକ ମାରୁତି ଏଥିରେ ରାଜି ହେଲେ କିନ୍ତୁ ଏପରି ଏକ ଜଟିଳ ପ୍ରଶ୍ନ କିପରି ପଚରା ଯାଇ ପାରିବ ? ସେ ପ୍ରଶ୍ନ କଲେ ।

ଡକ୍ଟର ଧନ୍ୱନ୍ତରୀ ସେମିତି ଏକ ବାର୍ତ୍ତାକୁ ଲେଖିବାକୁ ଚେଷ୍ଟା କଲେ । ତାହା ସରଳ ଅଥଚ ବ୍ୟାପକ । ଏଥିରୁ ଯେମିତି ମଣିଷର ମସ୍ତିଷ୍କ ଓ ତାର ବିକାଶ-ସମସ୍ୟା ସମ୍ପର୍କରେ ସ୍ପଷ୍ଟ ଭାବରେ ଜାଣି ହେବ ।

ଏହି ବାର୍ତ୍ତାର ଲେଖାଟି ଅଧ୍ୟାପକ ମାରୁତି ଓ ତାଙ୍କ ସାଥୀମାନେ ପୁନେ ନିକଟସ୍ଥ ଭାରତର ପ୍ରଥମ ଟେଲିକମ୍ୟୁନିକେସନ କେନ୍ଦ୍ର ଅର୍ଭିକୁ ନେଲେ କେତେ ପ୍ରକାର ପାଇରେ ଏହା ଲେଖାଗଲା । ଶକ୍ତିଶାଳୀ ଯନ୍ତ୍ରପାତି ଓ କମ୍ପ୍ୟୁଟର ସାହାଯ୍ୟରେ ଆଜିର ବୈଜ୍ଞାନିକମାନେ ଗୋଟିଏ ମିନିଟରେ ଯେତେ ତଥ୍ୟ ସଂଗ୍ରହ କରି ପାରୁଛନ୍ତି, ଆମେ ଯେତେ କଷ୍ଟ କଲେ ବି 200 ବର୍ଷରେ ସେତିକି ତଥ୍ୟ ମିଳୁ ନ ଥିଲା ।



ଏହି ବାର୍ତ୍ତା ପଠାଇବାର ବ୍ୟବସ୍ଥା ହେଲା । ଇଞ୍ଜିନିୟରମାନେ ଯନ୍ତ୍ରପାତି-ସବୁ ଠିକ୍ ଠିକ୍ କାମ କରୁଛି କି ନାହିଁ ଦେଖିଲେ । ଉପର ଆକାଶରେ ସେତେବେଳେ କୌଣସି ପ୍ରକାର ଉଡ଼ାଜାହାଜ ଯେମିତି ଉଡ଼ିବ ନାହିଁ, ତାର ବ୍ୟବସ୍ଥା ହେଲା ।

ଆନ୍ତର୍ଜାତୀୟ ଟେଲିକମ୍ୟୁନିକେସନ କେନ୍ଦ୍ର, ଜେନେଭାକୁ ଏକ ତାର ପଠାଯାଇ ଏହି ବାର୍ତ୍ତା ପ୍ରେରଣରେ ଯେମିତି କୌଣସି ବାଧା ସୃଷ୍ଟି ନ ହେବ, ସେଥିପାଇଁ ଅନୁରୋଧ କରାଗଲା ।

ବାର୍ତ୍ତା ପଠାଇବାରେ ପ୍ରାୟ ତିନି ଘଣ୍ଟା ଲାଗିଲା । ତିନି ଥର ଏହା ପଠାଗଲା । କମ୍ପ୍ୟୁଟର ହିସାବରୁ ଜଣାଗଲା ଯେ ଏହି ବାର୍ତ୍ତାର ସିଗ୍ନାଲ ବା ସଂକେତ ଶହ ଶହ ଆଲୋକ ବର୍ଷରେ ପହଞ୍ଚି ପାରିବ ।

ହଠାତ୍ ଉତ୍ତର ମିଳିବ ବୋଲି କେହି ଆଶା କରି ନ ଥିଲେ । ଇଞ୍ଜିନିୟରମାନେ କେବଳ 12 ବର୍ଷ ପରେ ଉତ୍ତର ମିଳି ପାରିବ ବୋଲି ଜଣାଇଲେ । ଏହା ପୁଣି ନିକଟବର୍ତ୍ତୀ ନକ୍ଷତ୍ର ବର୍ଣ୍ଣାଡର ପାଖ ଗ୍ରହରୁ ହିଁ ଆସିପାରେ । ଏହି ଗ୍ରହ ପ୍ରାୟ ଛଅ ଆଲୋକ ବର୍ଷ ଦୂରରେ ଅବସ୍ଥିତ । ବର୍ଣ୍ଣାଡ, ପୃଥିବୀଠାରୁ ନିକଟବର୍ତ୍ତୀ ତିନୋଟି ନକ୍ଷତ୍ର ମଧ୍ୟରୁ ଗୋଟିଏ । ଏହି ନକ୍ଷତ୍ରଟି ସୂର୍ଯ୍ୟର ଦଶ ଭାଗରୁ ଏକ ଭାଗ । କିନ୍ତୁ ଏହାର ଗତିରେ କେତେକ ଅସ୍ଥିରତା ଜଣାପଡ଼େ । ସମ୍ଭବତଃ ଏହାର କକ୍ଷ-ପଥରେ କେତେକ ଗ୍ରହର ଉପସ୍ଥିତ ଯୋଗୁଁ ଏମିତି ଘଟିଥାଏ ।



## ରାସାୟନିକ ଗୋଲକଧନ୍ଦା

ବାର ବର୍ଷ ବିତିଗଲା । ବାହାର ଜଗତକୁ ପଠାଇଥିବା ବାର୍ତ୍ତା ବିଷୟରେ ପୃଥିବୀର ଲୋକମାନେ ପ୍ରାୟ ଭୁଲି ଯାଇ ଥିଲେ । କେବଳ ଅର୍ଣ୍ଣି ଗବେଷଣା କେନ୍ଦ୍ରର ଅଳ୍ପ କେତେକ ବୈଜ୍ଞାନିକ ପ୍ରତିଦିନ ଏ ସମ୍ପର୍କୀୟ ବିବରଣୀକୁ ଲକ୍ଷ୍ୟ କରୁଥିଲେ ଓ ବିଶ୍ଳେଷଣ କରୁଥିଲେ । ସମୟର ସୀମା ପହଞ୍ଚିଲା ବେଳକୁ ସେମାନଙ୍କର ବ୍ୟସ୍ତତା ବଢ଼ିବାରେ ଲାଗିଲା ।

ଦ୍ୱାଦଶ ବର୍ଷଟି ଶେଷ ହୋଇ ଆସିଲା । ଡିସ୍ ବା ଥାଳିଆ ପାଖ କଥା କିଛି ଜଣାଗଲା ନାହିଁ । ଉତ୍ସାହ କମି ଗଲା । ଜଗାରଖା ସେମିତି ଚାଲୁ ରହିଲା ।

ତ୍ରୟୋଦଶ ବର୍ଷ ମଧ୍ୟ ସରିବାକୁ ହେଲା ତେବେ ସୁଦ୍ଧା କିଛି ଖବର ଅନ୍ତର ନାହିଁ । ତା'ପରେ ଠିକ୍ ସେଇ ବର୍ଷର ଶେଷ ଦିନ ଖବର କାଗଜରେ ବାହାରିଲା, ଅହମ୍ମଦାବାଦ ଠାରୁ 100 କିଲୋମିଟର ଦୂର, ଧହାଲା ଠାରେ ଅନେକ ଗୁଡ଼ିଏ ଉଲ୍କାପିଣ୍ଡର ବର୍ଷା ହେଲା ।

କେତେକ ଲୋକ ଭାବିଲେ—ଏହିସବୁ ଉଲ୍କାପିଣ୍ଡ ପ୍ରତି 12 ବର୍ଷରେ ଥରେ ଏମିତି ବର୍ଷା ହୁଏ । ଆଉ କେତେକ ଭାବିଲେ ଅର୍ଣ୍ଣିଠାରୁ ପଠା ଯାଇଥିବା ବାର୍ତ୍ତାର ଉତ୍ତର ଏଥିରେ ଥାଇ ପାରେ । ଏହି ଅଜଣା ଗ୍ରହର ସଭ୍ୟତା କ'ଣ ବେତାର ମାଧ୍ୟମ ଅପେକ୍ଷା ଉଲ୍କାପିଣ୍ଡକୁ ଏପରି ଯୋଗାଯୋଗ ପାଇଁ ସୁବିଧାଜନକ ମନେ କରିଛନ୍ତି କି ?

ଉତ୍ତମ ଭାବିଲେ ସେମାନେ ପୃଥିବୀର ଲୋକଙ୍କ ସହିତ ଭାବ ବିନିମୟ ପାଇଁ ଉଲ୍କାପିଣ୍ଡକୁ ଗୋଟିଏ ମାଧ୍ୟମ ଭାବରେ ଗ୍ରହଣ କରିଥିବେ ।



ଏହା ବି ହୋଇପାରେ ଗୋଟିଏ ବଡ଼ ଉଲ୍କାପିଣ୍ଡ ଯାହାକୁ ସେ ସୌଭାଗ୍ୟବଶତଃ ପାଇପାରି ଥିଲେ, ତା' ଅପେକ୍ଷା କେତେ ଗୁଡ଼ିଏ ଉଲ୍କାପିଣ୍ଡ ଏକାଠି ପଠାଇବାକୁ ଏହି ବାହାର ଜଗତର ଜୀବମାନେ ଅଧିକ ନିର୍ଭରଯୋଗ୍ୟ ବୋଲି ମନେ କରି ଥିବେ । ଉତ୍ତମ ଅଧ୍ୟାପକ ମାରୁତିଙ୍କୁ ଟେଲିଫୋନ କଲେ ଏବଂ ସେଇ ଉଲ୍କାପିଣ୍ଡ ଗୁଡ଼ିକର ବିଶ୍ଳେଷଣ ପରେ ଫଳାଫଳ ଅତି-

ଶୀଘ୍ର ଜଣାଇବାକୁ ଅନୁରୋଧ କଲେ ।

ଦୁଇଦିନ ଗତ ହେଲା । ରାତି ଅଧରେ ଉତ୍ତମଙ୍କର ଟେଲିଫୋନ ବାଜି ଉଠିଲା ।

"ମାରୁତି କହୁଛି । ଗୋଟିଏ ଖବର ଅଛି । ମଣିଷର ମସ୍ତିଷ୍କ ସମ୍ପର୍କରେ ଯେଉଁ ବାର୍ତ୍ତା ପଠା ଯାଇଥିଲା, ତାହା ଉଲ୍‌କାପିଣ୍ଡରେ ଦର୍ପଣୀ ପ୍ରତିଛବି ରୂପରେ ପ୍ରତିଫଳିତ ହୋଇଛି ।"

"ଅଦ୍ଭୁତ କଥା ତ । ଯେଉଁମାନେ ଏହାକୁ ପଠାଇଛନ୍ତି, ସେମାନଙ୍କର ଯାନ୍ତ୍ରିକ ଦକ୍ଷତା ସମ୍ପର୍କରେ ଆପେ ଆପେ ଜଣା ପଡ଼ିଯାଏ । ଏହା ମଧ୍ୟ ସ୍ପଷ୍ଟ ଜଣାପଡ଼େ ଯେ 12 ଆଲୋକ ବର୍ଷରେ ସେଇ ଅଜଣା ଦେଶର କେହି ଏହି ବାର୍ତ୍ତା ପାଇ ପାରିଥିଲା ।"

"ତେବେ ଉତ୍ତମ, ଏହାଠାରୁ ଆଉ ଅଧିକ କଥା ଅଛି । ଉଲ୍‌କାପିଣ୍ଡ ଭିତରେ ଆମେ କେତେକ ଜଟିଳ ରାସାୟନିକ ସୂତ୍ର ଥିଲା ପରି ଦେଖୁଛୁ ।"

ବିଶ୍ଳେଷଣ ଶେଷ ହେଲା ପରେ ବିଜ୍ଞାନାଗାର ତରଫରୁ ଏହି ସୂତ୍ର ପ୍ରକାଶିତ ହେବ । ଏହି ସୂତ୍ର ଯୋଗାଯୋଗକାରୀ ଉପଗ୍ରହ ସାହାଯ୍ୟରେ ସବୁ ମହାଦେଶକୁ ପଠା ଯାଇଥିଲା । ସେଗୁଡ଼ିକୁ ପରୀକ୍ଷା କରିବାକୁ ସମସ୍ତ ରସାୟନବିତ୍‌ଙ୍କୁ ନିମନ୍ତ୍ରଣ କରାଯାଇ ଥିଲା । ଭିନ ଭିନ କରି ସେ ସବୁକୁ ଦେଖିବାକୁ ବଡ଼ ବଡ଼ ଗଣକଯନ୍ତ୍ର ବା କମ୍ପ୍ୟୁଟର କାମରେ ଲଗା ଯାଇଥିଲା ।

ଉତ୍ତମ ଦେଖିଲେ ଯେ ପୁଣି ଥରେ ସେଥିରେ 21 ପାଇଁ 10101 ଠାର ବାର୍ତ୍ତାଟି ରହିଛି । "ଏମିତି ଯେଉଁ 21 ବାରମ୍ବାର ଆସୁଛି, ଏହା ଅଯଥା ବୋଲି ମୁଁ ନିଶ୍ଚୟ ଭାବୁନି । ଉତ୍ତମ ଅଧ୍ୟାପକ ମାରୁତିଙ୍କୁ କହିଲେ ।

ଏଥିରୁ କ'ଣ ଏହି ସୂଚନା ମିଳୁନି ଯେ ଅଜଣା ରାଇଜର ଲୋକେ ପୃଥିବୀକୁ ପଠାଇ ଏହି ସୂତ୍ରରୁ ଅର୍ଥ ବାହାର କରିବାକୁ ଏବଂ ତାକୁ ସେମାନଙ୍କ ପାଖକୁ ପୁଣି ପଠାଇବାକୁ ଚାହୁଁଛନ୍ତି ?





ଭାରତୀୟ ବୈଜ୍ଞାନିକ ଗୋଷ୍ଠୀ ଉପରେ ଏହି ଆହ୍ୱାନର ଉତ୍ତର ଦେବା ପାଇଁ ଖୁବ୍ ଚାପ ପଡ଼ିଲା । ପରୀକ୍ଷାଗାରରେ ଏହିପରି ସୂତ୍ର ବାହାର କରିବାକୁ ହେବ । ଏହି ରାସାୟନିକ ସୂତ୍ରରେ ବହୁ ଅଣୁ ପରମାଣୁର କଥା ଦେଖିବାକୁ ପଡ଼ିବ । ଏଥିପାଇଁ ସ୍ୱତନ୍ତ୍ର ଧରଣର ପରୀକ୍ଷାଗାର ନିତାନ୍ତ ଦରକାର । ଆଣବିକ ଶୃଙ୍ଖଳାଗୁଡ଼ିକ କିପରି ଗଠିତ ହୋଇଛି, ତାହା ଜାଣିବାକୁ ଯଥେଷ୍ଟ ଉଚ୍ଚ ଚାପ ସୃଷ୍ଟି କରିବାକୁ ହେବ । ଏହି ସୂତ୍ର ବାହାର କଲା ପରେ ସେଗୁଡ଼ିକର ଅଧିକ ବ୍ୟବହାର ପାଇଁ ବହୁ ପରୀକ୍ଷା ନିରୀକ୍ଷା କରାଯାଇପାରେ ।

ଦୁଇଟି ସ୍ୱତନ୍ତ୍ର ଭବନରେ ପ୍ରସ୍ତୁତ ପରୀକ୍ଷାଗାରକୁ ଅଲଗା କରି ରଖାଗଲା । ପୃଥିବୀର କୌଣସି ସଂକ୍ରମଣ ଏଠାରେ ହେଉଥିବା ପରୀକ୍ଷାଗୁଡ଼ିକୁ ପ୍ରଭାବିତ ନ କରିବା ପାଇଁ ସବୁ ପ୍ରକାର ସାବଧାନତା ନିଆଗଲା । ଗୋଟିଏ ବିରାଟ କାଚଘର ଭିତରେ ପୃଥିବୀର ପ୍ରାଥମିକ ଅବସ୍ଥାର ବାୟୁମଣ୍ଡଳ ସୃଷ୍ଟି କରାଗଲା । ଏଥିରେ ଉଦ୍‌ଜାନ, ଜଳୀୟବାଷ୍ପ ଆମୋନିଆ ଓ ମିଥେନ୍ ରହିଲା । ଆଜିର ବାୟୁମଣ୍ଡଳରେ ଥିବା ଯବକ୍ଷାରଜାନ ଓ ଅମ୍ଳଜାନର ମିଶ୍ରଣ ନ ଥିଲା । କେତେ ଦିନ ପାଇଁ ଏହି ପ୍ରାଚୀନ ବାୟୁମଣ୍ଡଳର ଉପାଦାନ ଗୁଡ଼ିକୁ ବୈଦ୍ୟୁତିକ ଶକ୍ତି ସାହାଯ୍ୟରେ ଘୂରାଇ ଦିଆଗଲା । ଏହା ଫଳରେ ବହୁ ଲକ୍ଷ ବର୍ଷ ତଳର ବାୟୁମଣ୍ଡଳ ସୃଷ୍ଟି କରିବାକୁ ହେଲା । ଏହା ଖୁବ୍ ବିସ୍ମୟକର ।

ଆଣବିକ ଏସିଡ୍ ଓ ପ୍ରୋଟିନ୍‌ର ଏକ ନୂତନ ମିଶ୍ରଣ ହିଁ ସବୁ ଜୀବନର ମୂଳସତ୍ତା ବୋଲି ବୋଧ ହେଲା । ଅଧ୍ୟାପକ ମାରୁତିଙ୍କ ମୁଣ୍ଡ ଘାଣ୍ଟିବାରେ ଲଗିଲା । ଉଲ୍‌କାପିଣ୍ଡର ପ୍ରାଥମିକ ଅନୁଧ୍ୟାନରେ ଏମିତି କିଛି ଘଟି ନ ଥିଲା । ନୂଆ କରି ପ୍ରୋଟିନ୍ ଗଢ଼ିବାରେ ନୂତନ ଏମିନୋ ଏସିଡ୍ ଲୋଡ଼ା ହେଲାପରି ଜଣାଗଲା । ଜୀବନର ରସାୟନିକ ମୂଳସତ୍ତାର ଏହା ଥିଲା ଏକ ବିଜୟ ।

ଡକ୍‌ଟର ଧନ୍ୱନ୍ତରୀଙ୍କୁ ସେ ଏ ବିଷୟରେ କହିଲେ—"ଆପଣ ଆଉ କେତୋଟି ମାସ ଏ ଦିଗରେ ପରୀକ୍ଷା କରି ପାରନ୍ତେ ।"

ସାରା ପୃଥିବୀରେ ବିଭିନ୍ନ ପରୀକ୍ଷାଗାରରେ ମାସ ମାସ ଧରି ଏହି କାର୍ଯ୍ୟ ଚାଲିଲା । ସୂତ୍ରର ବ୍ୟାଖ୍ୟା ଉପରେ ବିସ୍ତୃତ ଆଲୋଚନା ହେଲା । ଏଥିରୁ ଗୋଟିଏ ଏମିନୋ ଏସିଡ୍ ସମ୍ପର୍କରେ ନୂତନ ଆଲୋକପାତ କଲା ପରି ଜଣାଗଲା ।



ଜୀବସତ୍ତାରେ ଥିବା ପ୍ରୋଟିନ୍ ଉପରେ ନୂତନ ଏମିନୋ ଏସିଡ୍‌ର କାର୍ଯ୍ୟ କ'ଣ ?

"ମଣିଷ ଉପରେ ଏମିନୋ ଏସିଡ୍ ଓ ଅନ୍ୟାନ୍ୟ ନୂତନ ଆବିଷ୍କୃତ ପଦାର୍ଥଗୁଡ଼ିକର ପରୀକ୍ଷା କରାଯିବା ଉଚିତ ।"—ମାର୍କିନ ବୈଜ୍ଞାନିକମାନେ ବତାଇଲେ କିନ୍ତୁ ସୋଭିଏତ୍ ବାସୀଗଣ ଏହାର ବ୍ୟବହାରରେ ସାବଧାନ କରାଇଲେ । ସେମାନେ ଆଶଙ୍କା କଲେ ଯେ ଏହି ସୂତ୍ର ଗୋଟିଏ ପ୍ରକାର କୀଟାଣୁ ଜାତ କରାଇବ । ପୃଥିବୀରୁ ମଣିଷ ଜାତିକୁ ଧ୍ୱଂସ କରି ଦେବା ଯୋଜନାରେ ବାହାର ଜଗତର ଜୀବମାନେ ଏହାକୁ ପଠାଇଛନ୍ତି ।



ସାବଧାନତା ଶେଷରେ ସଫଳ ହେଲା । ପ୍ରଥମେ ଜନ୍ତୁଙ୍କ ଉପରେ ଏମିନୋ ଏସିଡ୍ ପ୍ରୟୋଗ କରିବାର ନିଷ୍ପତ୍ତି ହେଲା ।

ତଳେ ମୂଷାଙ୍କୁ ଏମିନୋ ଏସିଡ୍ ମିଶା ଖାଦ୍ୟ ଦେବାର ବ୍ୟବସ୍ଥା ହେଲା ।

ଅଳ୍ପ କେତେକ ସପ୍ତାହ ମଧ୍ୟରେ ମୂଷାମାନଙ୍କର ସ୍ମୃତିଶକ୍ତି ଖୁବ୍ ବଢିବାରେ ଲାଗିଲା । ଏବେ ସେମାନେ ଗୋଟିଏ ଗୋଲକ ଧନ୍ଦା ଭିତରେ ଥରେ ବାଟ ପାଇଗଲେ, ସେମାନେ ତା'ପରେ ଖୁବ୍ ଶୀଘ୍ର ଧାଇଁ ପାରୁଛନ୍ତି । ଏହି ପରୀକ୍ଷା ଦ୍ୱାରା ଉତ୍ସାହିତ ହୋଇ ଜୀବ ରସାୟନବିଦ୍‌ମାନେ ମଣିଷ ଉପରେ ସେହି ରାସାୟନିକ ପ୍ରୟୋଗ ଚଳାଇବାକୁ ଠିକ୍ କଲେ । କିନ୍ତୁ କେହି ଏହି ପରୀକ୍ଷାରେ ପଶିବାକୁ ରାଜି ହେଲେ ନାହିଁ ।

ଜୀବ ରସାୟନବିତମାନେ ହତାଶ ହେଲେ । ସ୍ଥାନୀୟ ମାନସିକ ଡାକ୍ତରଖାନାର ଡାକ୍ତରମାନଙ୍କୁ ଏମିନୋ ଏସିଡ୍ ମିଶାଇ ରୋଗୀମାନଙ୍କୁ ଖାଇବାକୁ ଦେବାକୁ କୁହାଯାଇଥିଲା । କେତେକ ହତାଶ ରୋଗୀଙ୍କୁ ଏହା ଖାଇବାକୁ ଦିଆଯାଇଥିଲା । ସେମାନେ ବୁଝାଇ ଦେଲେ ଯେ ଏମିନୋ ଏସିଡ୍ ଖାଇବାରେ କିଛି କ୍ଷତି ହେବ ନାହିଁ । ଅନ୍ୟପକ୍ଷରେ ଏହା ମସ୍ତିଷ୍କର ଉନ୍ନତିରେ ସାହାଯ୍ୟ କରିବ । ଏହାଠାରୁ ବଳି ଆନନ୍ଦର କଥା କ'ଣ ହୋଇପାରେ ? ଡାକ୍ତରମାନଙ୍କ ଅନୁମତି ମିଳିଲା ।





# ଏକ ବୁଦ୍ଧିମାନର ଅନ୍ତର୍ଦ୍ଧାନ

ଦୁଇଟି ବାଳକ ରମୁ ଓ ଲକ୍ଷ୍ମଣ ଆଉ ଏକ ଝିଅ ତରଙ୍ଗିଣୀ । ସେମାନଙ୍କର ବୁଦ୍ଧି ଭଲ ଭାବରେ ବଢି ପାରି ନ ଥିଲା । ଏହି ପରୀକ୍ଷା ପାଇଁ ସେମାନଙ୍କୁ ନିଆଗଲା । ମାସକ ଭିତରେ ସେମାନଙ୍କର ବୁଦ୍ଧି ଖୁବ୍ ବଢିଗଲା । ପରିଷ୍କାର ବାକ୍ୟରେ ସେମାନେ କହି ପାରିଲେ ଆଉ ଲେଖି ପାରିଲେ । ପ୍ରତ୍ୟେକେ ଆନନ୍ଦରେ ବିହ୍ୱଳ ହୋଇ ପଡିଲେ ।

ଆଉ ଅଳ୍ପ କେତେକ ସପ୍ତାହ ପରେ ପିଲାମାନେ ଆଗୁଆ ଯାନ୍ତ୍ରିକ ବହି ପାଠ କରିବାକୁ ଲାଗିଲେ । ସେମାନଙ୍କୁ ସଙ୍ଗେ ସଙ୍ଗେ ସବୁ ପ୍ରକାର ସାହାଯ୍ୟ ଯୋଗାଇ ଦିଆଗଲା । ଯେଉଁ ଗବେଷକମାନେ ସେମାନଙ୍କୁ ଦେଖିଲେ, ସେମାନେ ଅବାକ ହୋଇଗଲେ ।

ଦୁଇ ବର୍ଷରେ ପିଲାମାନେ କଠିନ ଗଣିତ ଓ ଯାନ୍ତ୍ରିକ ପ୍ରଶ୍ନର ସଠିକ ଉତ୍ତର ଦେଇ ପାରିଥିଲେ ।

ଯଦିଓ ସେମାନେ ଥଟ୍ଟାରେ ହସୁଥିଲେ, ଗୋଟିଏ ଆଶ୍ଚର୍ଯ୍ୟର କଥା ଲକ୍ଷ୍ୟ କରା ଯାଇଥିଲା । ତିନୋଟି ଯାକ ପିଲା କୌଣସି ଶ୍ରଦ୍ଧା ବା କ୍ରୋଧ ଦେଖାଉ ନ ଥିଲେ । ସେମାନେ ପଡିଗଲେ ବା ଖଣ୍ଡିଆ ଖାବରା ହୋଇଗଲେ କିଛିଟା ଅଘାତ ପାଇଲା ପରି ଜଣାପଡୁ ନ ଥିଲା ।

ଡକ୍‌ଟର ଧନଞ୍ଜୟୀ କହିଲେ—"ଏହା ନିଶ୍ଚୟ ନୂତନ ଏମିନୋ ଏସିଡ ଯୋଗୁଁ ଘଟିଛି । ମାତ୍ର କେମିତି ଏହା ମଣିଷର ମସ୍ତିଷ୍କକୁ ପ୍ରଭାବିତ କଲା, ଜାଣିବା କଷ୍ଟକର । ଗୋଟିଏ ଖୁବ୍ ବୁଦ୍ଧିଆ ମଣିଷ ଜାତି ଗଢିବା

ତାଙ୍କ ବହୁ ପରିମାଣର ଏମିନୋ ଏସିଡ ତିଆରି କରିବାକୁ ହେବ ବୋଲି ଅନେକ ଯୁକ୍ତି କଲେ । ମାତ୍ର ବାକୀ ପରୀକ୍ଷାଗୁଡ଼ିକ ବିଫଳ ହେଲା । ଯେତେ ଯତ୍ନ ଓ ଦକ୍ଷତାର ସହିତ ଚେଷ୍ଟା କଲେ ବି ଦୁର୍ଲଭ ଏମିନୋ ଏସିଡ୍ ଉତ୍ପାଦନ କରିବା କଠିନ ଥିଲା ।

ଡକ୍ଟର ଧନନ୍ତ୍ୱରୀ କହିଲେ, ''ପ୍ରଥମେ ଆମେ ଭାବିଲୁ ଆମର ଯନ୍ତ୍ରପାତି ବିଗିଡ଼ି ଯାଇଛି । ମାତ୍ର ପରୀକ୍ଷାଟିକୁ ପୃଥିବୀର ସବୁଠୁ ଭଲ ପରୀକ୍ଷାଗାରରେ ସମ୍ପାଦନ କରି ମଧ୍ୟ ସେଇ ଫଳ ମିଳିଲା ।





''ଏହା ହୋଇପାରେ ଯେ ଅଜଣା ବାହାର ଜଗତର ଜୀବମାନେ ଅନେକ ଅତି ବୁଦ୍ଧିମାନ ମଣିଷ ଜାତ କରିବାକୁ ରାଜି ନ ଥିବେ ।'' ଅଧ୍ୟାପକ ମାରୁତି ମତ ଦେଇଥିଲେ ।

ଡକ୍ଟର ଧନନ୍ତ୍ୱରୀ କହିଲେ, ''ଆପଣ ଜାଣନ୍ତି ଯେ ଯେଉଁ ଦ୍ୱିତୀୟ ବାର୍ତ୍ତା ଆମେ ପଠାଇ ଥିଲୁ, ତାହା ତାଙ୍କ ସମାଜରେ କ'ଣ ସବୁ ହେଲାଣି ଓ ବର୍ତ୍ତମାନ ହେଉଛି, ତା' ବିଷୟରେ ଜଣାଇବାକୁ । ସେମାନେ ସେ ବାର୍ତ୍ତାଟି ପାଇଲେ କି ନାହିଁ ।



କଥାବାର୍ତ୍ତା ମଝିରେ ଲକ୍ଷ୍ମଣଙ୍କ ରଣଗଣିଆ ସ୍ୱର ଶୁଣାଗଲା । ସେ କୋଠରୀ ମଧ୍ୟକୁ ପଶି ଆସି ଖୁବ୍ ଆବେଗରେ କହିଲେ, 'ରମୁ କୁଆଡ଼େ ହଜି ଯାଇଛି । ଏବେ ସେ କେଉଁଠି ଅଛି, ମୁଁ ଜାଣିନି । ସତେ ରମୁ କୁଆଡ଼େ ଗଲା ?'

ଏହି ଖବର ବଣନିଆଁ ପରି ଚଉଦିଗକୁ ଖୁବ୍ ଜୋରରେ ମାଡ଼ିଗଲା । ଚାରିଆଡ଼େ ତାକୁ ଖୋଜା ଚାଲିଲା । ଯେତେ ଜାଗାରେ ସେ ଥାଇପାରେ, ସେଠା ଦେଖାଗଲା । ପ୍ରତ୍ୟେକ ଘରେ ତା କଥା ପଚରା ଗଲା । ସବୁ ବିମାନ ବନ୍ଦର ଖାନତଲାସ କରାଗଲା । ଶ୍ରୀହରିକୋଟାଠାରେ ନାଆରେ ବସୁଥିବା ସବୁ ପିଲାଙ୍କୁ ପଚରାଗଲା । ରମୁର ଚେହେରା ଥିବା ଗୋଟିଏ ହେଲେ ପିଲା ଦେଖା ହେଲା ନାହିଁ । ଆନ୍ତର୍ଜାତିକ ପୋଲିସ ସଂସ୍ଥାକୁ ସତର୍କ କରାଇ ଦିଆଗଲା । ପ୍ରତ୍ୟେକ ମହାଦେଶର ଟେଲିଭିଜନରେ କୃତ୍ରିମ ଉପଗ୍ରହ ସାହାଯ୍ୟରେ ତା'ର ଛବି ଦେଖାଇ ଦିଆଗଲା । ବଡ଼ ବଡ଼ ପୁରସ୍କାର ବି ଘୋଷଣା କରାଗଲା ।

ଦିନ ପରେ ଦିନ ଗଲା କିନ୍ତୁ ରମୁର ଖବର କିଛି ମିଳିଲା ନାହିଁ । ନିରାପତ୍ତା ବ୍ୟବସ୍ଥାରେ ଅଭାବ ରହିଛି ବୋଲି ଖୁବ୍





ସମାଲୋଚନା ହେଲା ଫଳରେ ଲକ୍ଷ୍ମଣ ଓ ତରଙ୍ଗିଣୀଙ୍କର ସ୍ୱାଧୀନ ଭାବରେ ଚଳିବାରେ କଟକଣା ରହିଲା ।।

ଲୋକେ ତେବେ ବିଶ୍ୱାସ କରି ରହିଲେ ଯେ ରମୁ ଫେରିବ କିନ୍ତୁ ଏହା ଅଧିକ ଆଶାର କଥା ଆଉ କମ୍ ହିସାବପତ୍ରର କଥା ।

ପୃଥିବୀର ଲୋକେ ରମୁକୁ ଭୁଲିଗଲେ । ଆଉ ତା' ଚେହେରାର ପିଲାମାନଙ୍କୁ ଖାନତଲାସ କରାଗଲା ନାହିଁ । ସେ ଏକ କାହାଣୀ ବା କିମ୍ବଦନ୍ତୀର ଚରିତ୍ର ହୋଇ ରହିଲା ।

ଥରେ ହଠାତ୍ ଆମେରିକା ସାରା ବିପଦ୍‌କାଳୀନ ଘଣ୍ଟି ବାଜି ଉଠିଲା । ଆଣବିକଆକ୍ରମଣର ଲାଲ ସାବଧାନତା କି ? ଉଡାଜାହାଜ ସବୁ ବୋଝେଇ ହୋଇ ପ୍ରତି ଆକ୍ରମଣ କରିବାକୁ ପ୍ରସ୍ତୁତ ହୋଇ ରହିଲା । କାର୍ ଓ ଟ୍ରେନ୍ ଚଳାଚଳ ବନ୍ଦ କରାଗଲା । ଲୋକମାନେ ଜୀବନ ଭୟରେ କିଏ କେଉଁଠି ଲୁଚି ଛପି ରହିଲେ । ହଠାତ୍ ସେ ସବୁ ବନ୍ଦ ହୋଇଗଲା । ରେଡିଓ ଓ ଡାକ-ବାଜି ଯନ୍ତ୍ରରେ ଏକଥା ଜଣାଇ ଦିଆ ଗଲା । ସବୁକଥା ବୁଝାଇ ଦେବା ଫଳରେ ସମସ୍ତ ଧୀରସ୍ଥିର ।

"ଆଜି ସକାଳେ ଦେଶର ସବୁଠୁଁ ବଡ କ୍ଷେପଣାସ୍ତ୍ର କେନ୍ଦ୍ରର କଣ୍ଟ୍ରୋଲ ରୁମ୍ ଠାରେ ଗୋଟିଏ ଅଣୟୁରୋପୀୟ ପିଲା ଦେଖାଗଲା । କିପରି ସେ ପିଲା ଏତେ ଭିତରକୁ ଆସିଲା, ଏହା ରହସ୍ୟମୟ । ଜଗୁଆଳି ସତର୍କ ଘଣ୍ଟି ବଜାଇଲା । ଚାରିଆଡେ ସମସ୍ତେ ସାବଧାନ୍ ହେଲେ । ମାତ୍ର ଭୟ କରିବାର କିଛି ନାହିଁ ।"

ଅଧ୍ୟାପକ ମାରୁତି ହଠାତ୍ କ୍ଷେପଣାସ୍ତ୍ର କେନ୍ଦ୍ରକୁ ଗଲେ । ସେଥିରେ ପ୍ରବେଶ କରିବାରେ ଖୁବ୍ କଟକଣା ଜାରି ହୋଇଥିଲା । ତା' ଭିତରେ ଥିବା ଲୋକଙ୍କ ସହିତ ଭିତରେ ଥିବା ଫୋନ୍‌ରେ କଥା ହେଲେ ।

ଜଗୁଆଳି ପିଲା ସମ୍ପର୍କରେ ବିସ୍ତୃତ ବିବରଣୀ ଦେବାକୁ ପୂରା ମନା କରି ଦେଲା । "କିନ୍ତୁ ଏ ପିଲା ଆମର ହଜିଥିବା ରମୁ ହୋଇପାରେ ।" —ଅଧ୍ୟାପକ ମାରୁତି ଖୁବ୍ ପାଟି କରି କହିଲେ ।

କଣ୍ଟ୍ରୋଲ ରୁମ୍‌ର ଜଗୁଆଳି ଅବିଚଳିତ ରହିଲା । "ଆମର ଏଠାରେ ଅନେକ ବୁଦ୍ଧିମାନ ଅଛନ୍ତି । ମୁଁ ଏହା ଭିତରକୁ କାହାକୁ ଛାଡି ପାରିବି ନାହିଁ ।"

ସୌଭାଗ୍ୟକୁ ସେଇ ସମୟରେ କଣ୍ଟ୍ରୋଲ ରୁମ୍ ଭିତରେ କାର୍ଯ୍ୟ କରୁଥିବା ଜଣେ ବନ୍ଧୁ ଡକ୍ଟର ପୁଗ୍ ବାହାରକୁ ଚାଲି ଆସିଲେ ।



ଅଧ୍ୟାପକ ମାରୁତି ସବୁ କଥା ବୁଝାଇଲେ । ଡକ୍ଟର ପୁଗ୍ ଭିତରକୁ ଯାଇ ସେ ପିଲାଟି ରମୁ କି ନୁହେଁ ଦେଖିବାକୁ ଚାହିଁଲେ । ସେ ଦେଖିଲେ ପିଲାଟିଏ ଅଛି । ତାର ଚେହେରା ଅଧ୍ୟାପକ ମାରୁତିଙ୍କ ବର୍ଣ୍ଣନା ସହିତ ମିଳିଗଲା ।

କଣ୍ଟ୍ରୋଲ ରୁମ୍‌ର ଓଜନିଆ ଦୁଆର ସବୁ ବନ୍ଦ ଥିଲା ଆଉ ପରେ ସେହି ଅଧ୍ୟାପକ ଓ ଜଗୁଆଳି ନୀରବରେ ପରସ୍ପରକୁ ଚାହିଁଲେ ।

ଏହିପରି ବ୍ୟସ୍ତତାର ସହିତ ଅପେକ୍ଷା କରି ରହିଲେ । ଶେଷରେ ହସି ହସି ଡକ୍ଟର ପୁଗ ବାହାରିଲେ ଆଉ ତାଙ୍କ ସାଙ୍ଗକୁ ଜଣାଇଲେ ଯେ ତା' ଭିତରେ ଥିବା ପିଲାଟି ହେଉଛି ରମୁ । ଅଧ୍ୟାପକ ମାରୁତି ଆନନ୍ଦିତ ହେଲେ । ମହାଶୂନ୍ୟରେ ଉପହାରଟି ବଞ୍ଚି ରହିଛି ।





## ଜାହାଜ ଓ କ୍ଷେପଣାସ୍ତ୍ର ସବୁ ଅସୁବିଧାରେ ପଡ଼ିଲେ

ଲକ୍ଷ୍ମଣ ଓ ତରଙ୍ଗିଣୀ ସେମାନଙ୍କର ସାଙ୍ଗ, ରମୁ କୁଆଡ଼େ ଚାଲି ଯିବାରେ ଢିଲେ ହେଲେ ଚିନ୍ତିତ ନ ଥିଲେ । ସେମାନଙ୍କ ମୁହଁରେ ଆବେଗର ଚିହ୍ନ ଜମା ନ ଥିଲା । ସେମାନେ ସତ୍ୟତରେ କ'ଣ ଅନୁଭବ କରୁଥିଲେ, କେହି ଜାଣି ପାରୁ ନ ଥିଲେ ।

ଅଧ୍ୟାପକ ମାରୁତି ରମୁର ଉପସ୍ଥିତ ବିଷୟରେ ଜଣାଇ ଦେବାରୁ ସମସ୍ତେ ଆନନ୍ଦିତ ହେଲେ । ମାତ୍ର ତା'ର ଦୁଇ ସାଙ୍ଗଙ୍କ ମୁହଁରେ ଟିକିଏ ହେଲେ ମୁରୁକି ହସ ମଧ୍ୟ ଦେଖିବାକୁ ମିଳିଲା ନାହିଁ । ସେମାନେ କେତେକ କଠିନ୍ ଅଙ୍କ କଷିବାରେ ବ୍ୟସ୍ତ ଥିଲେ ।

ଆମେରିକା ଯୁକ୍ତରାଷ୍ଟ୍ରରୁ ଫେରିଲା ପରେ ରମୁକୁ ସମ୍ବାଦପତ୍ରର ଲୋକମାନେ ଘେରିଗଲେ । ସେ କିପରି ଖସି ପଳା-



ଇଲା ସେ ସମ୍ପର୍କରେ ତାକୁ ବହୁ ପ୍ରଶ୍ନର ଉତ୍ତର ଦେବାକୁ ପଡ଼ିଲା । ସେ କାହିଁକି ଏକ ବିପଦ ସଂକୁଳ ଅଞ୍ଚଳ ଭିତରକୁ ଗଲା, ପଚାରିବାରୁ ସେ ଉତ୍ତର ଦେଲା, ''ଏହା କେତେକାଂଶରେ ବିପଦ ସଂକୁଳ ବୋଲି ମୁଁ ଜାଣିଥିଲି । କିନ୍ତୁ ଶାନ୍ତିର ଅନ୍ୱେଷଣରେ ସେଇ ବାଟରେ ଆଗେଇ ଯାଇଥିଲି । ଉଭୟ ପକ୍ଷରେ ଯେଉଁ ଆଣବିକ ଅସ୍ତ୍ରଶସ୍ତ୍ର ଠୁଳ ହୋଇଛି, ତା' ମୂଳରେ ରହିଛି ଭୟ ।

କିପରି ସେ କଣ୍ଟ୍ରୋଲ ରୁମ୍ ଭିତରକୁ ଗଲା, ପ୍ରଶ୍ନ ହେବାରୁ ରମ୍ମୁ ଉତ୍ତର ଦେଲା, "ସବୁତରେ ତାହା କ୍ଷେପଣାସ୍ତ୍ର ଛାଡିବା କେନ୍ଦ୍ର ହୋଇଥିବାରୁ ଭଲ ଭାବରେ ଜଗାରଖା ହୋଇଥିଲା । କିନ୍ତୁ ମୁଁ ତା' ଭିତରକୁ ପଶିଯାଇ ପାରିଥିଲି । ହଁ ମୁଁ ହୁସିଆର ହୋଇ ତା' ଭିତରକୁ ଯାଇଥିଲି । ମୁଁ ଜଣେ ଉପରିସ୍ଥ ଅଧିକାରୀଙ୍କ ସହିତ କଥାବାର୍ତ୍ତା କଲି । ପ୍ରଥମେ ସେ ଭାବିଲେ ଯେ ମୁଁ ଗୋଟିଏ ଛୋଟ ପିଲା । ତା'ପରେ ମୁଁ ଆଗେଇ ଚାଲିଲି । ତାଙ୍କୁ ମୁଁ କେତେକ କଥା କହି ଚାଲିଲି । ଯେଉଁ ସମସ୍ୟା ଗୁଡିକର ସେ ସମ୍ମୁଖୀନ ହେଉ ଥିଲେ, ସେ ସମ୍ପର୍କରେ ବି କହିଲି । ସେ ତାଙ୍କ ଅଫିସକୁ ମୋତେ ନେଲେ । ଚା' ଖାଇବାକୁ ଦେଲେ । କଥା କହିବାରେ ଲାଗିଲେ । ମୁଁ ଏକ ଛୋଟ ପିଲା ବୋଲି ସେ ମଧ୍ୟ ଭୁଲି ଗଲେ । ମୋତେ ସବୁ ବୁଲାଇ ଦେଖାଇଲେ । ତା'ପରେ ତାଙ୍କର ମନେ ପଡିଲା ଯେ ମୁଁ ଗୋଟିଏ ଛୋଟ ପିଲା । ମୋତେ କେତେକ ଚକୋଲେଟ୍ ଆଣି ଦେବାକୁ ଚାହିଁଲେ । ଯେତେବେଳେ ସେ ଏହାକୁ ଆଣିବାକୁ ଚେଷ୍ଟା କରୁଥିଲେ, ମୁଁ ଖସି ପଳାଇଲି । କ'ଣ କରିବାକୁ ହେବ, ମୁଁ ଜାଣିଥିଲି । ମୁଁ ଠିକ୍ ଭାବରେ ଚଳାଇଲି । ତାହା ଚାଲିଲା । ଖୁବ୍ ସରଳ ତ ।"

"କିନ୍ତୁ ତୁମର ଉପର ହାକିମ ବନ୍ଧୁ କ'ଣ କହିଲେ ?"

"ସେ କିଛି ବୁଝି ପାରିଲେ ନାହିଁ । ଅବଶ୍ୟ ପରେ ବୁଝିଲେ ।" ରମୁ ହସିଲା । "ସେ ଏତେ ବ୍ୟସ୍ତ ହୋଇ ପଡିଲେ ଯେ ସେ କାନ୍ଦିବାକୁ ବସିଲେ । ତୁମେ ଦେଖ । ମୁଁ ତାଙ୍କର ସବୁ କାମ ବନ୍ଦ କରି ଦେଲି ।"

ଜଣେ ସାମ୍ବାଦିକ ପଚାରିଲେ, "ଆପଣ ତାଙ୍କ





ପାଇଁ ଦୁଃଖିତ ନୁହନ୍ତି ?''

''ନାଁ, ମୁଁ ଠିକ୍ କରିଛି । ସେ ମୋତେ ଦେଖିବା ଉଚିତ ଥିଲା ।'' ସାମ୍ବାଦିକମାନେ ରମୁର ପ୍ରତ୍ୟେକ ଶବ୍ଦକୁ ଟିପ୍‌ପି ନେଉଥିଲେ । ସେମାନଙ୍କ ମଧ୍ୟରୁ ଜଣେ ପଚାରିଲେ ''ତୁମେ ସେ ବ୍ୟବସ୍ଥାକୁ ଭଙ୍ଗି ଦେବାକୁ ଚାହିଁଥିଲ ?''

ରମୁ କହିଲା, ''ଆଣବିକ ଯୁଦ୍ଧ ଭୟରୁ ପୃଥିବୀକୁ ରକ୍ଷା କରିବାକୁ ମୁଁ ଏହା କରିଥିଲି ।''

''କିନ୍ତୁ ତୁମେ ଗୋଟିଏ କେନ୍ଦ୍ର ରେ ଏହା କରିପାରିଲ । ଅନ୍ୟ କେନ୍ଦ୍ର ଗୁଡିକ କଥା କ'ଣ ?''

''ଅବଶ୍ୟ ସବୁ କେନ୍ଦ୍ରକୁ ଭଙ୍ଗି ଦେବା ଥିଲା ମୋର ଲକ୍ଷ୍ୟ ।''

''ତୁମେ କ'ଣ ସତରେ କୃତକାର୍ଯ୍ୟ ହୋଇପାରିବ ? ବାସ୍ତବତା ତ ଏହାଠାରୁ ଅଲଗା ।''

''ଅପେକ୍ଷା କର । ସବୁ ହୋଇପାରିବ, ଦେଖିବ ।'' ଏହି ସମୟରେ ଆଉ ଏକ ସମସ୍ୟା ଦେଖା ଦେଲା । ପ୍ରଚୁର ପରିମାଣର ତେଲ ଭସି ପୃଥିବୀର ବନ୍ଦର ଗୁଡିକୁ ଅଚଳ କରିବାକୁ ବସିଲାଣି । ଜାହାଜ ଚଳାଚଳରେ ଅସୁବିଧା ହେଉଛି । କୌଣସି ସରକାର ତାକୁ ସଫା କରିଦେବାରେ ସଫଳ ହୋଇ ପାରି ନାହାନ୍ତି । ସମୁଦ୍ର ଓ ଉପକୂଳର ଜୀବନ ପ୍ରତି ଏହା ଏକ ବିପଦ । କ'ଣ କରିବାକୁ ହେବ ? ପିଲାମାନେ ଏଥିରେ କ'ଣ ସାହାଯ୍ୟ କରି ପାରିବେ ?

ଲକ୍ଷ୍ମଣ ଓ ତରଙ୍ଗିଣୀ ରମୁ ବ୍ୟତୀତ କିଛି କରିବାକୁ ଅମଙ୍ଗ ହେଲେ । ଏବେ ରମୁ ଫେରି ଆସିବାରୁ କ୍ୟାପ୍‌ଟେନ୍ ଉତ୍ତମ ସେମାନଙ୍କୁ ଦେଖିବାକୁ ଆସିଲେ । ତେଲ ବିପଦ ବୁଝାଇ ଦେଲେ ଏବଂ ପଚାରିଲେ, ''ତୁମେ ଏହି ସମସ୍ୟାର ସମାଧାନ କରିପାରିବ ?''

ରମୁ ଧୀର ସ୍ୱରରେ ଉତ୍ତର ଦେଲା, ''ଆମେ ଆମର ଯଥାସାଧ୍ୟ ଚେଷ୍ଟା କରିବୁ । ଆମେ ଚେଷ୍ଟା କରିବୁ କିନ୍ତୁ ଫଳାଫଳ ବିଷୟରେ କିଛି ଜବାବ ଦେଇ ପାରିବୁ ନାହିଁ ଏବଂ ଯଦିବା ଆମେ କୌଣସି ସମାଧାନର ବାଟ ପାଇବୁ, ଆମେ ତାହା କାହାକୁ କହିବୁ ନାହିଁ । ସବୁତକ ଆଣବିକ ଅସ୍ତ୍ରଶସ୍ତ୍ର ଧ୍ୱଂସ ପାଇଲେ ଯାଇ ଆମେ ଏହି କଥାର ରହସ୍ୟ କାହାକୁ କହିବୁ ।





## ଆମମାନଙ୍କୁ ରକ୍ଷାକର

ପିଲାମାନେ ତେଲ ଦ୍ୱାରା ହେଉଥିବା ପ୍ରଦୂଷଣ ସମସ୍ୟାର ବିଶ୍ଳେଷଣ ଆରମ୍ଭ କଲେ । ସେମାନେ ଯେଉଁସବୁ ପଦ୍ଧତି ଗ୍ରହଣ କରି ସଫଳ ହୋଇପାରିଲେ ନାହିଁ, ସେ ସବୁର ଅନୁଧ୍ୟାନ କଲେ । ତେଣୁ ସମସ୍ୟାର ସମାଧାନ ପାଇଁ ଗୋଟିଏ ନୂତନ ପଦ୍ଧତି ପ୍ରୟୋଗ କରିବାକୁ ଚାହାଁରିଲେ । ଶେଷରେ ତିନି-ଜଣ ଯାକ ବୁଦ୍ଧିମାନ୍ ପିଲା ସଫଳ ହୋଇ ପାରିଲେ ନାହିଁ । ହୋଇପାରେ, ବାହାର ଜଗତର ଜୀବମାନେ ଅଧିକ ସଫଳ ହୋଇଥିବେ । ଯଦି ଏହା ଠିକ୍ ହୁଏ, ଏଇ ପିଲାମାନେ ଶୀଘ୍ର ଏକ ପ୍ରଶ୍ନ ପ୍ରସ୍ତୁତ କରି ପାରିବେ । ପିଲା-ମାନେ ରାଜି ହେଲେ, କିନ୍ତୁ ଏକ ସର୍ତ୍ତ ଆରୋପ କଲେ । ସମାଧାନର ସୂତ୍ର ମିଳିବା ପୂର୍ବରୁ ସମସ୍ତ ଜାତି ସେମାନଙ୍କର ଆଣବିକ ଅସ୍ତ୍ରଶସ୍ତ୍ରକୁ ନଷ୍ଟ କରି ଦିଅନ୍ତୁ ।

ଯେତେବେଳେ ଏହି ଚୂଡାନ୍ତ ନିଷ୍ପତ୍ତି ଜଣାଇ ଦିଆଗଲା, କେତେକ ଦେଶ ମାନିଗଲେ । ଅନ୍ୟମାନେ କିନ୍ତୁ ଅମଙ୍ଗ ହେଲେ । ପିଲାମାନେ କିନ୍ତୁ ସେମାନଙ୍କ ନିଷ୍ପତ୍ତିରେ ଅଟଳ ରହିଲେ । ବଡ ବଡ ରାଷ୍ଟ୍ର ସେମାନଙ୍କ ସର୍ତ୍ତ ମାନିବାକୁ ବାଧ୍ୟ ହେଲେ ।

ସେମାନେ ଚାହୁଁଥିବା ପ୍ରତିଶ୍ରୁତି ପାଇବା ପରେ ଲକ୍ଷ୍ମଣ, ରମୁ ଓ ତରଙ୍ଗିଣୀ କାର୍ଯ୍ୟ ଆରମ୍ଭ କଲେ । ବାହାର ଜଗତକୁ କେଉଁ ବାର୍ତ୍ତା ପଠା-ଇବେ ? କିନ୍ତୁ ସେମାନେ ଶାନ୍ତିରେ ରହି ପାରିଲେ ନାହିଁ । ପୃଥିବୀର ଲୋକେ ଅନ୍ୟ ଜଗତରୁ ଯେଉଁଠୁ ଉତ୍ତର ଆସିପାରେ ସେ ସବୁ ବିଷୟରେ



ଜାଣିବାକୁ ଉଦ୍‌ବିଗ୍ନ ହୋଇ ପଡ଼ିଲେ । ତେଣୁ ସେମାନେ ପିଲାମାନଙ୍କୁ କେତୋଟି ଗ୍ରହରେ ଜୀବ ଅଛନ୍ତି, ସେ ବିଷୟରେ ପ୍ରଶ୍ନ ପଚାରି ଅଥୟ କରି ଦେଲେ । ତରଙ୍ଗିଣୀ ମନକୁ ମନ ସେଭଳି ସଂଖ୍ୟା 10,000 ବୋଲି କହି ପକାଇଲା ।

କେତେ ନକ୍ଷତ୍ରରେ ଗ୍ରହମଣ୍ଡଳ ଅଛି, ସେହି ଗ୍ରହ ମଣ୍ଡଳରୁ କେତୋଟି ଗ୍ରହରେ ଜୀବନ ପାଇ ଅନୁକୂଳ ପରିବେଶ ରହିଛି, କେତୋଟି ଗ୍ରହର ଗୋଟିଏ ଗୋଟିଏ ସ୍ତରରେ ଜଟିଳ ଜୀବ ଗଠନ ସମ୍ଭବ ପ୍ରଭୃତି ସେ ପ୍ରଥମେ ହିସାବ କରି ଦେଲା । ତା'ପରେ କେତୋଟି ଗ୍ରହରେ ଗ୍ରହାନ୍ତର ଯାତ୍ରା ପାଇଁ ଆବଶ୍ୟକ ବୁଦ୍ଧି ଥିବା ଜୀବ ଅଛନ୍ତି, ତାହା ଠିକ୍ କଲା । ଋମୁ ମଧ୍ୟ କାରି–ଗରୀ—ସମୃଦ୍ଧ ସଭ୍ୟତାରେ ହାରାହାରି ଜୀବନକାଳ କେତେ ହିସାବ କଲା ।

ଜଣେ ଗବେଷକ ପଚାରିଲେ, "କିପରି ସେମାନଙ୍କର ଜୀବନକାଳ ଠିକ୍ କରିପାରିଲ ?"

ଋମୁ କହିଲା, "ପୃଥିବୀର ଲୋକମାନଙ୍କ ବହୁ ସମସ୍ୟାକୁ ଉଚ୍ଚ ସଭ୍ୟତାମାନ ସମାଧାନ କରି ସାରିଥିବେ । ବାହାର ଜଗତର ଜୀବମାନେ ପରିବେଶର ପ୍ରଦୂଷଣ ସମସ୍ୟାକୁ ସମାଧାନ କରିଥିବେ ଏବଂ ବହୁ ଧ୍ୱଂସ-କାରୀ ଅସ୍ତ୍ରଶସ୍ତ୍ର ଓ ନିୟନ୍ତ୍ରିତ ଜନ ସଂଖ୍ୟାର ପ୍ରତିକାର କରିଥିବେ ।"

"ଆମର ନିଜ ପୃଥିବୀ ଠାରୁ ଅଧିକ ସମୃଦ୍ଧ କେତେକ ସଭ୍ୟତା ରହିଥିବ ।" ଋମୁ କହିଲା; "ସେଗୁଡ଼ିକ ମଧ୍ୟରୁ କେତେକରେ ଜୀବନର ରୂପାନ୍ତର ପାଇଁ ଅନୁକୂଳ ଅବସ୍ଥାମାନ ଥିବ ।"

ଏବେ ବାହାର ଜଗତକୁ ପଠାଯିବା ପାଇଁ ବାର୍ତ୍ତା ଠିକ୍ ହୋଇଗଲା । ଏହାକୁ ବିଶେଷ ସ୍ତବରେ ଠାର ଭାଷାରେ ଲେଖାଗଲା । ଏହି ବାର୍ତ୍ତାକୁ ପଠାଇବା ପାଇଁ ତିନି ଘଣ୍ଟା ଲାଗିଲା ଏବଂ ବର୍ଣ୍ଣାଡ଼ଙ୍କ ନକ୍ଷତ୍ରକୁ ମଧ୍ୟ ପଠାଗଲା ।

ଏହି ବାର୍ତ୍ତାକୁ ଗୋପନୀୟ ରଖାଗଲା । କିନ୍ତୁ ଏଥିରୁ ଗୋଟିଏ କଥା ପ୍ରକାଶ ପାଇ ଯାଇଥିଲା । ଏହି ବାର୍ତ୍ତାରେ ଗୋଟିଏ ଅନୁରୋଧ ଥିଲା—ବାହାର ଜଗତର ଜୀବମାନେ ପୃଥିବୀକୁ କୌଣସି ଅଣୁଜୀବ ପଠାଇବା ଉଚିତ ନୁହେଁ, ଏହି ଅନୁରୋଧ ଅଭିଠାରେ ବୈଜ୍ଞାନିକମାନେ ଯୋଗ କରି ଦେଇଥିଲେ । ମୂଳ ବାର୍ତ୍ତାରେ ତେଲ ପ୍ରଦୂଷଣ ସମସ୍ୟାର ସମାଧାନରେ ସେମାନଙ୍କର ସାହାଯ୍ୟ କାମନା କରା ଯାଇଥିଲା ।

ବିଜ୍ଞାନ ଜଗତ ଶାନ୍ତିରେ ନିଶ୍ୱାସ ମାରିଲା । ବାହାର ଜଗତରୁ କ୍ଷତି-



କାରକ ଜୀବାଣୁ ଆସି ପୃଥିବୀରେ ମାରତ୍ମକ ଅଜଣା ରେଗ ବିସ୍ତାର କରିବେ, ଏହି ଭୟ ଥିଲା ।

ଶେଷରେ ବାର୍ତ୍ତାଟି ଫେରି ଆସିଲା । ଲକ୍ଷ୍ମଣ, ରମୁ ଓ ତରଙ୍ଗିଣୀ ଜଟିଳ କମ୍ପ୍ୟୁଟର ସାହାଯ୍ୟରେ ସେଇ ବାର୍ତ୍ତାକୁ ବିଶ୍ଳେଷଣ କଲେ । ସେମାନେ ଶୀଘ୍ର କେତେକ ସୂତ୍ର ସେଥିରୁ ପାଇଲେ । ସେହି ସୂତ୍ର ସାହାଯ୍ୟରେ

ତେଲକୁ କିପରି ଅଲଗା କରାଯାଇ ପାରିବ, ଜଣା ପଡ଼ିଲା । ଅବଶ୍ୟ ଏଥି-ପାଇଁ ତେଲର ବ୍ୟବହାର କିପରି କରାଯିବ, ଅଲଗା ଭାବରେ କିଛି ଲେଖା ନ ଥିଲା । ପୃଥିବୀରେ ମଣିଷ ଜାତିର ଉପକାର କଲାଭଳି ଅନେକ ବଡ଼ ସମସ୍ୟାର ସମାଧାନରେ ଏହି ସୂତ୍ର ସାହାଯ୍ୟ କରିପାରିବ ।

ଏହି ସମୟ ମଧ୍ୟରେ ଦଳେ ଲୋକ ଏହି ନୂତନ ସୂତ୍ରର ଭଲମନ୍ଦ ବିଚାର କରିବାରେ ଲାଗି ପଡ଼ିଲେ । ଏକ ପକ୍ଷରେ ପୃଥିବୀର ସମୁଦ୍ର-ପଥ ସବୁ ସଫା ହୋଇ ପାରିବ, ଏହା ସ୍ୱାଗତ ଯୋଗ୍ୟ । ଅନ୍ୟ ପକ୍ଷରେ କିନ୍ତୁ ପୃଥି-ବୀର ଆଣବିକ ଅସ୍ତ୍ର ଭଣ୍ଡାର ଭାଙ୍ଗି ପଡ଼ିବ । ଏହାର ଅର୍ଥ ଅନେକ ଅସ୍ତ୍ର ବ୍ୟବସାୟୀଙ୍କର ସୌଭାଗ୍ୟକୁ ନଷ୍ଟ କରି ଦେବା । ଏହାର ପ୍ରତିକାର କରି-ବାକୁ ହେବ । ଅସ୍ତ୍ର ବେପାରୀମାନେ ଗୋପନରେ ସଭା କରି କି ପ୍ରତିକାର କରିବେ, ତାହାର ଯୋଜନା କଲେ ।







## ସନ୍ତ୍ରାସବାଦୀଙ୍କ ଷଡଯନ୍ତ୍ର

ଶମ୍ଭୁ, ଲକ୍ଷ୍ମଣ ଓ ତରଙ୍ଗିଣୀ—ଏହି ନାମ ଗୁଡ଼ିକ ଅନେକ ଥର ଶୁଣାଗଲା । କିଛି ଉତ୍ତର ମିଳିଲା ନାହିଁ । ତିନି ଜଣଙ୍କ ଭିତରୁ କାହାର ପତ୍ତା ମିଳିଲା ନାହିଁ ।

ଗୋଟିଏ ସତର୍କ ଘଣ୍ଟି ବାଜି ଉଠିଲା, ସମସ୍ତ ସନ୍ଧାନ ପଥ ତନଖି କରାଗଲା । ତିନି ଜଣ ଯାକ ପିଲା ଅନ୍ତର୍ଦ୍ଧାନ ହୋଇଛନ୍ତି ।

ଅନୁମାନ ଚାଲିଲା । କେତେକ କହିଲେ ସେମାନେ ଖୁବ୍ ଚତୁର । ତେଣୁ ବୋମା ଓ କ୍ଷେପଣାସ୍ତ୍ରମାନ ନଷ୍ଟ କରି ଦେବାକୁ ଯେଉଁ ପ୍ରତିଶ୍ରୁତି ମିଳିଲା, ସେଥିରେ ସେମାନେ ବେଶୀ ସତ୍ୟତା ଦେଖିଲେ ନାହିଁ । ତେଣୁ ସେମାନେ ଅନ୍ୟ ପୃଥିବୀକୁ ଚାଲି ଯାଇଥିବେ ।

ହଠାତ୍ ଖବର ମିଳିଲା ।

କେତେକ ସନ୍ତ୍ରାସବାଦୀ ଦଳ ଧରା ପଡ଼ିଛନ୍ତି । ସେମାନେ ଗୋଟିଏ ଉଡ଼ାଜାହାଜ କେନ୍ଦ୍ରରେ ଟାଇମ୍ ବୋମା ଖଞ୍ଜୁଥିଲେ । ପୋଲିସ ବହୁ ପଚରା ଉଚରା କଲା ପରେ ପିଲାମାନଙ୍କ ସମ୍ପର୍କରେ କେତେକ ଗୁଢ଼ ତଥ୍ୟ ମିଳିଛି ।

ଆନ୍ତର୍ଜାତୀକ ଅସ୍ତ୍ର ବ୍ୟବସାୟୀ ସଙ୍ଘ ଦ୍ୱାରା ପିଲାମାନଙ୍କୁ ହରଣଚାଲ କରିବାକୁ ଦଳେ ସନ୍ତ୍ରାସବାଦୀ ନିଯୁକ୍ତ ହୋଇଛନ୍ତି । ପିଲାମାନଙ୍କ ଘରେ ପଶିବାକୁ ଅସମର୍ଥ ହେବାରୁ ସେମାନେ ଏକ କୌଶଳ କଲେ । ବୁଦ୍ଧି ଖେଳ ପ୍ରତି ପିଲାମାନଙ୍କର ଖୁବ୍ ଆଗ୍ରହ ଥିଲା । ସନ୍ତ୍ରାସବାଦୀମାନେ ଉଚ୍ଚ ଶ୍ରେଣୀର ଏକ ଚାଲାକ ଚେସ୍ ଖେଳର ବ୍ୟବସ୍ଥା କଲେ । ସେଥିରେ କିନ୍ତୁ ଗୋଟିଏ ଭୁଲ ଥିବା କଥା ପିଲାମାନେ ହଠାତ୍ ବାହାର କଲେ ।

ବଡ ଗଣିତଜ୍ଞ ରୂପରେ ଦୁଇଜଣ ସନ୍ତ୍ରାସବାଦୀ ପିଲାମାନଙ୍କୁ ଦେଖା କଲେ । କେତେକ ମଉଜିଆ ଯୁକ୍ତିତର୍କ ପରେ ସେମାନେ ସମସ୍ତେ ଗୋଟିଏ ବଗିଚାକୁ ଚାଲିଗଲେ । କଳା ଧଳା ଖଞ୍ଜ ମଲମଲ ପଥର ତିଆରି ଗୋଟିଏ ପୁରୁଣା ଚେସ୍ ବୋର୍ଡ ସେଠାରେ ଥିଲା । ତରଙ୍ଗିଣୀ ସେଥିରେ ଥିବା ଭୁଲଟି ଦେଖାଇ ଦେବାକୁ ଚାହିଁଲା । ଏହି ଭୁଲ୍‌ଟି ଅତି ବୋକା ଲୋକଟିଏ ମଧ୍ୟ ଜାଣି ପାରିଥାନ୍ତା ।

ସେମାନେ ଯେତେବେଳେ ହସୁଥିଲେ, ସନ୍ତ୍ରାସବାଦୀ ଦଳର ଅନ୍ୟମାନେ ବୁଦା ଉହାଡରେ ଲୁଚିଥିଲେ । ଖପ୍ ଖାପ୍ ଡେଇଁ ପଡିଲେ । ସେମାନେ ପିଲାମାନଙ୍କୁ ତରତର ହୋଇ ନେଇ ଗଲେ । ସେମାନଙ୍କୁ ଚିନ୍ତା କରିବାକୁ ବେଳ ନ ଥିଲା । ଶେଷରେ ସେମାନେ କ'ଣ କରିବେ କିଛି ଜାଣି ପାରିଲେ ନାହିଁ ।

ତରଙ୍ଗିଣୀ ଚୁପଚାପ୍ କହିଲା ''ମୋ ପିଛା ଧର ।'' ତା' ବ୍ୟତୀତ ଅନ୍ୟ ସମସ୍ତେ ଅବଲୋହିତ ଆଲୋକକୁ ଅନୁଭବ, କରି ପାରୁଥିଲେ । ସେମାନେ ଭୟ କରି ନ ଥିଲେ ଏବଂ ଖସି ପଳାଇଥିଲେ । ସନ୍ତ୍ରାସବାଦୀମାନେ ଯେତେବେଳେ ସେମାନଙ୍କୁ ଯିବାର ଦେଖିଲେ, ତା' ଭିତର କିଟି କିଟି କଳା ଅନ୍ଧାର । ସେମାନେ ସେମାନଙ୍କର ବନ୍ଦୀଙ୍କ ପତ୍ତା ପାଇ ପାରିଲେ ନାହିଁ ।

ଏହି ସନ୍ତ୍ରାସବାଦୀମାନେ ଏବେ ପୋଲିସ ହେପାଜତରେ ରହିଲେ । ସେମାନଙ୍କୁ ପଚରା ଉଚରା ଚାଲିଲା । ଉପଗ୍ରହ ନିକ୍ଷେପ କେନ୍ଦ୍ରରୁ ସମ୍ବାଦ ମିଳିଲା ଯେ କେତେକ ଅଜଣା ଲୋକ କଣ୍ଟ୍ରୋଲ ରୁମ୍ ଭିତରକୁ ଗୋଟିଏ ଶଟ୍‌ଲ ବା ମାକୁ ଯାନରେ ଯାଇଛନ୍ତି । ସେମାନଙ୍କୁ କେହି ଚିହ୍ନି ପାରି ନାହାନ୍ତି ।

ଅଧ୍ୟାପକ ମାରୁତି ହଠାତ୍ ବୁଝିଗଲେ ଯେ ସେମାନେ ସେଇ ତିନି ଜଣ ବୁଦ୍ଧିମାନ ପିଲା ହେବେ । କିନ୍ତୁ ଦୁଃଖିତ ହେଲେ ଯେ ମଣିଷ ଜାତି ଏହାଦ୍ୱାରା ଏକ ସୁବର୍ଣ୍ଣ ସୁଯୋଗରୁ ବଞ୍ଚିତ ହେଲା । ମଣିଷର ମସ୍ତିଷ୍କ କିପରି କାର୍ଯ୍ୟ କରୁଛି, ସେ ସମ୍ପର୍କରେ ଚିତ୍ତାକର୍ଷକ ଅନ୍ତର୍ଦୃଷ୍ଟି ଅର୍ଜନ କରି ପାରି ଥା'ନ୍ତା ।





## ଦୁଃଖାବହ ଘଟଣା

ନୈନିତାଲସ୍ଥ ଉପଗ୍ରହ ନିରୀକ୍ଷଣ କେନ୍ଦ୍ରରେ କାର୍ଯ୍ୟ କରୁଥିବା ଦଳର ମୁଖ୍ୟ ଥକ୍କାମାରି ବସି ପଡିଲେ । ଗୋଟିଏ ଉପଗ୍ରହ କକ୍ଷଚ୍ୟୁତ ହୋଇଛି । ନିର୍ଦ୍ଦିଷ୍ଟ କକ୍ଷ ପଥରେ ତାହା ଗତି କରୁ ନାହିଁ । ଏଠାରୁ ମିଳୁଥିବା ସଂକେତମାନ ମଧ୍ୟ ତଫାତ ହେଉଛି । ତେଣୁ ବୈଜ୍ଞାନିକମାନଙ୍କ ମଧ୍ୟରେ ଘମାଘୋଟ ଆଲୋଚନା ଚାଲିଛି ।

ପ୍ରଧାନ ନିୟନ୍ତ୍ରଣ କେନ୍ଦ୍ରର ମୁଖ୍ୟ ବଡ ପାଟିରେ କହୁଛନ୍ତି, "ସେଠାରେ ସମ୍ଭବତଃ ଏକ ଯୁଦ୍ଧ ଚାଲିଛି ।"

ଘନଘନ ଫୋନ ବାଜି ଉଠିଲା । ସେତିକି ବେଳେ ଅନେକ ଉପଗ୍ରହ କେନ୍ଦ୍ର ଏହି ଦୃଶ୍ୟ ନିରୀକ୍ଷଣ କରୁଥିଲେ । ସେମାନେ ପୂର୍ବ ନିର୍ଦ୍ଧାରିତ ଆଚରଣ ଅନୁସାରେ ତଥ୍ୟ ସଂଗ୍ରହ କରିଥିଲେ ।

ଅଧ୍ୟାପକ ମୀରୁତି ପ୍ରଥମେ ଜଣାଇଲେ ଯେ ଉପଗ୍ରହର କକ୍ଷପଥରେ ଯେଉଁ ସବୁ ବିଶୃଙ୍ଖଳା ଘଟୁଛି ହୁଏ ତ ସେ ତିନିଜଣ ପିଲାଙ୍କ ଯୋଗୁଁ ହୋଇଥିବ । ପରେ ପରେ ଏ କଥାର ପ୍ରତିବାଦ କରାଯାଇଥିଲା । ଏହା ସତ୍ୟ ଯେ ସେହି ପିଲାମାନେ କକ୍ଷରେ ଥିବା ଏକ ଉପଗ୍ରହକୁ ମଧ୍ୟ ପଥରେ ଠିକଣା କରିବା କୌଶଳ ଜାଣି ପାରି ନ ଥିଲେ ।

ହଠାତ୍ ମହାଶୂନ୍ୟରୁ ଏକ ଉଚ୍ଚ ଓ ସ୍ପଷ୍ଟ ସ୍ୱର ଶୁଣାଗଲା । ଏହି ସ୍ୱର ରମୁର ବୋଲି ହଠାତ୍ ଜଣା ପଡ଼ିଗଲା । ସେ କହିଲା ଯେ କକ୍ଷ ପଥରେ ସେ ଓ ତାର ସାଙ୍ଗମାନେ ନିରାପଦରେ ଅଛନ୍ତି । ସେ ସିଧା ଖବରେ ହରଣଚାଲ କଥା



କହିଲା ନାହିଁ । କିନ୍ତୁ ପୃଥିବୀରେ ଏବେବ ମଧ୍ୟ କୁଚକ୍ରୀ ଲୋକ ଅଛନ୍ତି, ଏହାର ସୂଚନା ଦେଲା ।

ତାର ସଂକ୍ଷିପ୍ତ କଠୋର ମତାମତକୁ କିଏ କେଉଁ ପରି ଅର୍ଥକଲେ । ତିନି ପିଲାଙ୍କ ଉପରେ କିଛି ବିପଦ ପଡ଼ିନି ଜାଣି କେତେକ ଶାନ୍ତିରେ ନିଶ୍ୱାସ ମାରିଲେ । ପୁରୁଣା ବଂଧୁ କ୍ୟାପଟେନ୍ ଉତ୍ତମ ଦୁଃଖ କରି କହିଲେ ଯେ ଏପରି ପିଲା ପୁଣି ହିଂସାକାଣ୍ଡର ଶିକାର ହେବେ । ଯେଉଁ ବିଶେଷଜ୍ଞମାନେ ତୈଳ ପ୍ରଦୂଷଣ ସମସ୍ୟାର ସମାଧାନରେ ଲାଗି ପଡ଼ିଥିଲେ, ପିଲାମାନଙ୍କ ହରଣଚାଲ ଯୋଗୁଁ ବେଶି ହତାଶ ହୋଇ ପଡ଼ିଲେ । ଏହି ସମାଧାନର ଶେଷ ସୁତ୍ରଟି ହଜିଗଲା ।

ବାକୀ ସନ୍ତ୍ରାସବାଦୀମାନେ, ଯେଉଁମାନେ ଧରା ପଡ଼ି ନ ଥିଲେ ସେମାନେ ଡରିଗଲେ । ସେମାନେ ଭୟ କଲେ ଯେ ପିଲାମାନେ ସେମାନଙ୍କୁ ଚିହ୍ନାଇ ଦେବେ । ଯାହା ହେଉ ପଛେ, ପିଲାମାନଙ୍କୁ ଖତମ କରି ଦେବା ଯୋଜନା ଭଣ୍ଡୁର ହୋଇଗଲା । ସେମାନଙ୍କୁ ଏଥିପାଇଁ ଯେତିକି ଅର୍ଥ ମିଳିବ ବୋଲି କୁହାଯାଇଥିଲା, ତାର ଅଧା ସେମାନେ ପାଇଥିଲେ । ଅସ୍ତ୍ର ବ୍ୟବସାୟୀମାନେ ମଧ୍ୟ ଦୁଃଖିତ ହୋଇଥିଲେ । ପୋଲିସକୁ ଲାଞ୍ଚ ଦେଇ ହାତ କରିବାର ଚେଷ୍ଟା ହେଲା ।

ସନ୍ତ୍ରାସବାଦୀମାନେ ନିରାଶ ହେଲେ । ପିଲାମାନଙ୍କୁ ହାତକୁ ଆଣିବାକୁ ପୁଣି ଚେଷ୍ଟା କରିବେ । ସେମାନେ ଏକ ସ୍ୱତନ୍ତ୍ର ମହାଶୂନ୍ୟ, ମାକୁଆନକୁ ଭଡା ନେଲେ । ଜଣେ ଅଭିଜ୍ଞ ମହାକାଶ ଯାତ୍ରୀ ଏହାକୁ ଚଳାଇବା ପାଇଁ ନିଯୁକ୍ତ ହେଲା ।

ସେମାନେ ଚାଲିଲେ । ପିଲାମାନଙ୍କ ସହିତ ଆଉ ଯାନଟି ମାତ୍ର ଏକ ଶହ ମିଟର ଦୂରରେ ।

ସନ୍ତ୍ରାସବାଦୀମାନେ ସେମାନଙ୍କର ମହାକାଶ ଯାନରୁ ବାହାରିବାକୁ ସାହସ କଲେ ନାହିଁ । ପିଲାମାନେ ରହିଥିବା ମହାକାଶ ଯାନଟିକୁ ଘେରି ସେମାନଙ୍କୁ ହାତ କରିବା ପାଇଁ ଚେଷ୍ଟା ହେଲା ।

ତରଙ୍ଗିଣୀ ପ୍ରଥମେ ଦେଖିଲା ଯେ ଆଉ ଏକ ମହାକାଶ ଯାନ ସେମାନଙ୍କ ପିଛା ଧରିଛି । ସେମାନଙ୍କ ଛଦ୍ମପୂର୍ଣ୍ଣ ସଂକେତର ଉତ୍ତର ସନ୍ତ୍ରାସବାଦୀମାନେ ଦେଉଥିଲେ । କିନ୍ତୁ ଅନ୍ୟ ଯାନର କେତୋଟି ଅସ୍ୱାଭାବିକତାକୁ ତରଙ୍ଗିଣୀ ଲକ୍ଷ୍ୟ କଲା । ସେ ଓ ତାର ସାଙ୍ଗମାନେ ଏସବୁ ଅଧିକରୁ ଅଧିକ ସନ୍ଦେହ କଲେ ।

ପିଲାମାନେ ଅଜଣା ମହାକାଶ ଯାନ ସମ୍ପର୍କରେ ସମସ୍ତ ଖବର ରେଡିଓ ସାହାଯ୍ୟରେ ଜଣାଇଲେ । ସେମାନେ ଏବେ ଜାଣିଲେ ଯେ ପୂର୍ବ ଶତ୍ରୁମାନଙ୍କ ଦ୍ୱାରା ଏହି ଯାନଟି ପଠାଯାଇଛି । ପିଲାମାନେ ବାରମ୍ବାର ଦାବୀ କରିଥିଲେ ଯେ ପୃଥିବୀରୁ ସବୁତକ ଆଣବିକ ଅସ୍ତ୍ରଶସ୍ତ୍ର ଲୋପ ପାଉ, ଏହି ଦାବୀ ପୂରଣ ହେବାରୁ ସେମାନେ ପ୍ରଦୂଷଣ ସମସ୍ୟା ସମାଧାନ ପାଇଁ ଏକ ସୂତ୍ର ମଧ୍ୟ ଦେଲେ ।

ମହାକାଶ କେନ୍ଦ୍ରରୁ ସମ୍ବାଦ ମିଳିଲା ଯେ ପିଲାଙ୍କ ଯାନ ପାଖରେ ସନ୍ତ୍ରାସବାଦୀମାନେ ଆଉ ଏକ ଯାନରେ ପହଞ୍ଚି ସାରିଛନ୍ତି । ଡକ୍ଟର ଧନନ୍ତରୀ ଓ ଅଧ୍ୟାପକ ମାରୁତି ଏକ ବିବୃତି ଦେଲେ ଯେ ପୃଥିବୀର ବୈଜ୍ଞାନିକ-ଗଣ ପିଲାମାନଙ୍କୁ ଧରି ପକାଇବାରେ ସାହାଯ୍ୟ କରନ୍ତୁ ନାହିଁ । ଜାତିସଂଘର ସାଧାରଣ ଅଧିବେଶନ ସନ୍ତ୍ରାସ-ବାଦୀଙ୍କ କୁକାର୍ଯ୍ୟକୁ ନିନ୍ଦା କରି ଗୋଟିଏ ପ୍ରସ୍ତାବ ଗ୍ରହଣ କଲେ । ସେମାନଙ୍କୁ ତଳକୁ ହଠାତ୍ ଓହ୍ଲାଇ ଆସିବାକୁ ଆଦେଶ ଦିଆଗଲା । କିନ୍ତୁ ଏହି ନିଷ୍ପତ୍ତିକୁ କିପରି କାର୍ଯ୍ୟ-କାରୀ କରାଯିବ, ତା'ର ଉପାୟ ନ ଥିଲା ।

ଏହିପରି ଅବସ୍ଥା ଚାଲିଲା । ସାରା ପୃଥିବୀର ବିଜ୍ଞାନୀମାନେ ବ୍ୟସ୍ତ ହୋଇ ପଡ଼ିଲେ ।

ପିଲାଙ୍କୁ ରକ୍ଷା କରିବାକୁ ଏକ ଚେଷ୍ଟା ହେଲା । ଗୋଟିଏ ବଡ଼ ମହାକାଶଯାନ ଛାଡ଼ିଲା । ଏହାର ସହକାରୀ ପାଇଲଟ ବା ଚାଳକ ଥିଲେ ଉତ୍ତମ । ପିଲାମାନଙ୍କୁ ଫେରାଇ ଆଣିବା ପାଇଁ ସେ ପ୍ରତିଶ୍ରୁତି ଦେଲେ । କିନ୍ତୁ ସେମାନଙ୍କୁ କିପରି ରକ୍ଷା କରାଯିବ, ସେ ବିଷୟରେ କିଛି କୁହାଗଲା ନାହିଁ । କାରଣ ସନ୍ତ୍ରାସବାଦୀମାନେ ଆଗରୁ ଏହା ଜାଣି ଗଲେ ସବୁ ଛନ୍ଦ୍ରର କରିଦେବେ ।

ବିରାଟ ମହାକାଶ ଯାନଟି ପିଲାମାନଙ୍କ ପାଖ ହେଲା ମାତ୍ରେ ପରସ୍ପରକୁ ଅଭିନନ୍ଦନ ଜଣାଇଲେ । ସନ୍ତ୍ରାସବାଦୀ-ମାନେ ନିଜ ଯାନକୁ ଫେରାଇ ଆଣିଲେ । ବିପଦରୁ ରକ୍ଷା ମିଳିଲା ।



ଏହି ଦୃଶ୍ୟକୁ ଟେଲିଭିଜନରେ ପୃଥିବୀର ଲକ୍ଷ ଲକ୍ଷ ଲୋକ ଦେଖିଲେ । କ୍ୟାପ୍‌ଟେନ ଉତ୍ତମ ମହାକାଶରେ ପଦଯାତ୍ରା କରି ପିଲାମାନଙ୍କୁ



ନେଇଥିବା ଯାନଟିକୁ ପରିଦର୍ଶନ କଲେ । ସେ କ୍ୟାବିନ ଦୁଆରରେ ସେମାନଙ୍କୁ ଦେଖିଲେ ଏବଂ ଖବର ଦେଲେ ଯେ ପିଲାମାନେ ଭଲ ଅଛନ୍ତି । ପ୍ରତ୍ୟେକ ସେମାନଙ୍କର ନିରାପଦ ଯାତ୍ରା ପାଇଁ ବ୍ୟଗ୍ର ରହିଲେ ।

ହଠାତ୍ ଗୋଟିଏ ସତର୍କ ଘଣ୍ଟି ବାଜି ଉଠିଲା । କ୍ୟାପ୍ଟେନ୍ ଉତ୍ତମଙ୍କୁ ଫେରି ଯିବାକୁ ଆଦେଶ ଆସିଲା । ମହାଶୂନ୍ୟରେ ଲକ୍ଷ ଲକ୍ଷ କିଲୋମିଟର ଦୂରରେ ଗୁଡାଏ ଉଲ୍କାପିଣ୍ଡ ଖସୁଥିବାର ଦେଖାଗଲା । ପିଲା-ମାନଙ୍କୁ ହଠାତ୍ ରକ୍ଷା କରିବାକୁ ହେବ ।

ଯେତେବେଳେ "ଆମମାନଙ୍କୁ ରକ୍ଷା କର" ବାର୍ତ୍ତା ସେମାନଙ୍କ ପାଖକୁ ପଠାଗଲା, ସମୁ ବିପଦ କଥା ବୁଝିଲେ । ସେତେବେଳେ କିନ୍ତୁ ସେମାନେ ବାହାର ଜଗତର ଜୀବଙ୍କ ଦ୍ୱାରା ପଠା ଯାଇଥିବା ପୃଥିବୀର ତୈଳ ପ୍ରଦୂଷଣ ସମସ୍ୟାର ସମାଧାନ ସମ୍ପର୍କରେ ଥିବା ସୂତ୍ରର ଅର୍ଥ ବାହାର କରିବାରେ ବ୍ୟସ୍ତ ଥିଲେ ଏଥିରେ କିଛି ବିଳମ୍ବର ଆଶଙ୍କା ଥିଲା । ମଣିଷ ଜାତିର ମଙ୍ଗଳ ପାଇଁ ପିଲାମାନଙ୍କର ଚିନ୍ତା, ପୁଣି ସେମାନେ ଯେତେବେଳେ ବିପଦରେ ପଡିଥିଲେ, ସେତେବେଳେ ସେମାନଙ୍କର ଆକୁଳ ଚେଷ୍ଟା ଅନେକଙ୍କର ମନକୁ ଛୁଇଁଲା । ସେମାନେ କିପରି ନିରାପଦରେ ଶୀଘ୍ର ବଡ ଯାନଟି ଭିତରକୁ ଆସି ପାରିବେ, ସମସ୍ତେ ସେଥିପାଇଁ ଉଦ୍‌ବିଗ୍ନ ହୋଇ ପଡିଲେ ।

ପିଲାମାନଙ୍କୁ ହିସାବପତ୍ର ବନ୍ଦ କରି ଶୀଘ୍ର ଶିରସ୍ତ୍ରାଣ ପିନ୍ଧିବାକୁ ଉପଦେଶ ଦିଆଗଲା । ଉଲ୍କାପିଣ୍ଡ ଗୁଡିକ ପାଖେଇ





ଆସିଲା ।

ରମୁ ବାହାରକୁ ଆସିବାରୁ କ୍ୟାପ୍‌ଟେନ୍ ଉତ୍ତମ ବଡ ଯାନ ଭିତରେ ରହି ତାର ସବୁ ବଢାଇ ଦେଲେ । ଆଉ ସେଗୁଡ଼ିକୁ ବ୍ୟବହାର କରିବାକୁ ରେଡ଼ିଓ ବାର୍ତ୍ତା ଦେଲେ ।

ହଠାତ୍ ନିଆଁ ହୁଳା ପରି ସେକେଣ୍ଡକ ପାଇଁ ଦେଖାଗଲା । କ୍ୟାପ୍‌-ଟେନ୍ ଉତ୍ତମ ଶୀଘ୍ର ଜାଣି ପାରିଲେ ଯେ କୌଣସି ଭୟଙ୍କର ବିପଦ ପଡ଼ିଛି । ଗୋଟିଏ ଛୋଟ ଉଲ୍‌କାପିଣ୍ଡ ରମୁର ଛାତି ଭିତରେ ପଶିଯାଇଛି ।

କ୍ୟାପ୍‌ଟେନ ଉତ୍ତମ ଖୁବ୍ ଶୀଘ୍ର କାର୍ଯ୍ୟରେ ଲାଗି ପଡ଼ିଲେ । ତା'ର ଓ ପ୍ଲାଟଫର୍ମ ରମୁକୁ ଛୁଇଁଲା ଏବଂ ସେ ଧୀର ଭାବରେ ବଡ ମାକୁ ଯାନ ଭିତରକୁ ତାକୁ ନେଇ ଆସିଲେ । କିନ୍ତୁ ହାୟ, ରମୁ ମରି ପଡ଼ିଥିବାର ଦେଖା ଗଲା । ତା' ଦେହ ଉପରେ ତୈଳ ପ୍ରଦୂଷଣ ସମସ୍ୟାର ସମାଧାନର ସୂତ୍ର ସବୁ ପଡ଼ି ରହିଥିଲା । ତା' ଛାତିର ତରଳ ରକ୍ତରେ ସେସବୁ ଭୁଡ୍‌ବୁଡ୍ ହୋଇ ଯାଇଥିଲା ।

ସାରା ପୃଥିବୀ ଏହି ଦୁଃସମ୍ବାଦ ପାଇ ଦୁଃଖରେ ଅଭିଭୂତ ହୋଇ ପଡ଼ିଲା । ସନ୍ତ୍ରାସବାଦୀମାନେ ଯାହା କରି ପାରି ନ ଥିଲେ ମହାକାଶର ଗୋଟିଏ ଛୋଟ ପଥର ଆଖି ପିଛୁଳାକେ ତାହା କରି ଦେଲା । ଜାତି-ସଂଘର ସାଧାରଣ ଅଧିବେଶନ ଏକ ମିନିଟ ପାଇଁ ନୀରବତା ପାଳନ କଲା । ତରୁଣ ବୀରଙ୍କୁ ଉଚ୍ଛ୍ୱସିତ ପ୍ରଶଂସା କରାଗଲା ।

ଅନ୍ୟ ଦୁଇଟି ପିଲାଙ୍କୁ କିପରି ନିରାପଦ ଭାବରେ ଉଦ୍ଧାର କରାଯାଇ ପାରିବ, ସେଥିପାଇଁ ଦାବୀ ହେଲା । ବୃହତ୍ ଶକ୍ତି ଗୁଡ଼ିକ ଆଶୁ ପଦକ୍ଷେପ ନେଇ ଲକ୍ଷ୍ମଣ ଓ ତରଙ୍ଗିଣୀକୁ ଉଦ୍ଧାର କରନ୍ତୁ ବୋଲି ସମସ୍ତେ ଅନୁରୋଧ କଲେ । ମହାକାଶଯାନ ପଠାଇବା ପୂର୍ବରୁ ଏହି ଯୋଜନା ବିଷୟରେ ରେଡ଼ିଓ ସାହାଯ୍ୟରେ ସେମାନଙ୍କୁ ଜଣାଇବା ଦରକାର ବୋଲି କୁହାଗଲା । କିନ୍ତୁ ସେମାନଙ୍କର ଉତ୍ତର ଥିଲା ଆଶାତୀତ ।

ପିଲାମାନଙ୍କ ପାଖରୁ ଉତ୍ତର ଆସିଲା, "ଆମେ ଆଉ ପୃଥିବୀକୁ ଫେରିଯିବୁ ନାହିଁ ବୋଲି ସ୍ଥିର କରିଛୁ । ମହାଶୂନ୍ୟରେ ଆମେ ସାରା ଜୀବନ ରହି ପାରିବୁ । ସାଧାରଣତଃ ମହାକାଶ ଯାତ୍ରୀମାନେ ଅଳ୍ପ କେତେ ବର୍ଷ ପାଇଁ ମହାଶୂନ୍ୟରେ ରହିପାରନ୍ତି । କିନ୍ତୁ ଆମେ ଶୂନ୍ୟ ଓଜନରେ ମଣିଷ କିପରି ସହି ପାରିବ, ତାର ସୀମା ଉଦ୍‌ଘାଟନ କରିବାରେ ଲାଗିବୁ ।"

ପିଲାମାନଙ୍କର ଏହି ଉତ୍ତର ଉପଗ୍ରହ ସାହାଯ୍ୟରେ ସବୁ ଆଡେ



ଯନ୍ତ୍ରବିତ ହୋଇଗଲା ଅସ୍ତ୍ର ନିର୍ମାତା ବ୍ୟବସାୟୀ ଓ ସନ୍ତ୍ରାସବାଦୀମାନେ ଶାନ୍ତିରେ ନିଶ୍ୱାସ ମାରିଲେ । କାପ୍ଟେନ୍ ଉତ୍ତମ ଓ ଅଧ୍ୟାପକ ମାରୁତି ଚିନ୍ତିତ ହେଲେ। ଲକ୍ଷ୍ମଣ ଓ ତରଙ୍ଗିଣୀ ଯେଉଁ ମାକୁ ମହାକାଶ ଯାନରେ ଥିଲେ, ସେଥିରେ ସୀମିତ ପରିମାଣର ଖାଦ୍ୟ ଓ ଅମ୍ଳଜାନ ଥିଲା । ଅଧିକ ବୁଦ୍ଧି ଯୋଗୁଁ ସେମାନେ କ ଣ ଜୀବନର ମୌଳିକ ଆବଶ୍ୟକତାମାନ କମାଇ ସାରିଲେଣି କି ? ଏଥି ଯୋଗୁଁ ସେମାନେ ଏତେ ବୁଦ୍ଧିଆ ହୋଇପାରିଛନ୍ତି କି ?

ଅଧ୍ୟାପକ ମାରୁତି କ୍ୟାପ୍ଟେନ୍ ଉତ୍ତମଙ୍କୁ ପଚାରିଲେ, "ତରଙ୍ଗିଣୀ ବା ଲକ୍ଷ୍ମଣ କେହି ଜଣ ପାଇଁ ବ୍ୟସ୍ତ ହେଉଥିବା ଆପଣ ଲକ୍ଷ୍ୟ କରିଥିଲେ କି ? ସେମାନେ କ'ଣ ଏତେ ଶୀଘ୍ର ଆମକୁ ଭୁଲି ଯାଉଛନ୍ତି କି ?

କ୍ୟାପ୍ଟେନ୍ ଉତ୍ତମ ଉତ୍ତର ଦେଲେ, "ମୁଁ ବିଶ୍ୱାସ କରୁଛି, ସେମାନଙ୍କ ଦେହେରୁ ଜଣା ପଡୁଥିଲା ଏସବୁ ଆବେଗ ଓ ଅନୁଭୂତି ସେମାନଙ୍କୁ ଛୁଇଁ ପାରି ନ ନଥିଲା । ସେମାନଙ୍କୁ ଅତି ବୁଦ୍ଧିମାନ କରିବାରେ ଆଉ କିଛି ମଧ୍ୟ ଦାୟୀ ହୋଇଥିବ ।"

ଏଥି ମଧ୍ୟରେ ବୈଜ୍ଞାନିକମାନେ ପରାମର୍ଶ ଦେଲେ ଯେ ରମୁର ମସ୍ତିଷ୍କକୁ ସେମାନେ ପରୀକ୍ଷା କରି ଦେଖନ୍ତୁ ।



## ବୈଜ୍ଞାନିକମାନଙ୍କୁ ଏହା କିପରି ଲାଗିଲା

ରମୁ ମରି ପଡ଼ିଲା । ତା'ମୁହଁରେ ଏକ ଅଦ୍ଭୁତ ସ୍ମିତହାସ୍ୟ । ଡକ୍‌ଟର ଧନନ୍ତରୀ ବୁଝିଲେ ଯେ ରମୁର ମସ୍ତିଷ୍କ ନିଶ୍ଚୟ ପରୀକ୍ଷା କରିବା ଦରକାର । ଅଧିକ ବୁଦ୍ଧିମାନ ହେବାର କ'ଣ ଚିହ୍ନ ଅଛି କି? ପିଲାବେଳୁ ସେ ସେମାନଙ୍କୁ ଦେଖି-ଥିଲେ । ସେମାନେ ଥିଲେ ଖୁବ୍ ସାଧାରଣ ମଣିଷ । କିନ୍ତୁ ସାଧାରଣ ମଣିଷ ସମାଜ ଠାରୁ ଏତେ ଉପରକୁ ଉଠିପାରିଲେ କିପରି ?

ଦଳେ ଡାକ୍ତର ବହୁ ଯନ୍ତ୍ରରେ ରମୁର ମସ୍ତିଷ୍କକୁ ଖୋଲିଲେ । ତା'ର ଆକାର ପ୍ରକାର ଓ ଗଢ଼ଣ ଦେଖିଲେ । କୌଣସି ଦିଗରେ କିଛି ତଫାତ୍ ଅଛି କି ? ଉଦାହରଣ ସ୍ୱରୂପ, ଏହା ଆକାରରେ ବଡ଼ କି ? ନାଁ, ବରଂ ଦେଖାଗଲା ଏହା ଅଳ୍ପ ସାନ । ତେବେ ବୁଦ୍ଧି ସାର ମସ୍ତିଷ୍କର ଏକ କାର୍ଯ୍ୟ, ହଁ, ଆଗପାଖଟା ଖୁବ୍ ଉନ୍ନତ । ମସ୍ତିଷ୍କର କେତୋଟି ଭାଗ ଖୁବ୍ ସୁଗଠିତ । ସମସ୍ତ ସ୍ନାୟବିକ ସଂଯୋଗ ଖୁବ୍ ଦୃଢ଼ ଥିଲା ପରି ଜଣାଗଲା । ପ୍ରକୃତରେ ଏହା ଏକ ସାଧାରଣ ମସ୍ତିଷ୍କ । କିନ୍ତୁ—

ଜଣେ ଡାକ୍ତର ପଚାରିଲେ, "ହଁ ?"

ଡାକ୍ତର ଦଳର ମୁଖ୍ୟ କହିଲେ, "ରମୁର ମସ୍ତିଷ୍କର ପରିଷ୍କାର ଭାବରେ ଦେଖାଉଛି ଯେ, ମଣିଷର ମସ୍ତିଷ୍କର ଉନ୍ନତିର କିଛି ସୀମା ନାହିଁ । ଆମେ କହି ପାରିବା ଯେ, କୌଣସି ମସ୍ତିଷ୍କ ଭିତରେ ଆମେ ଯେତେ ରଖିବା ସେତେ ପୂରାଇ ପାରିବା । ସଂଗଠନ, ସ୍ମୃତି ଓ ଆଶା ହ ମୁଖ୍ୟ ପଥ, ଯାହା ମାଧ୍ୟମରେ ସେ ସବୁ ହୋଇଥାଏ । ଥରେ ବୁଦ୍ଧିର

ପ୍ରକ୍ରିୟା ଆରମ୍ଭ ହୋଇଗଲା । ତିନି ପିଲାଙ୍କ ଭିତରୁ ପ୍ରତ୍ୟେକ ବହୁତ ଆଶା କରି ଚାଲିଲେ ଏବଂ ସ୍ମୃତିସବୁ ଗଦା ହେବାରେ ଲାଗିଲା ।"

"ଆବେଗ ଆଉ ବଢିଲା ନାହିଁ । ତରଙ୍ଗିଣୀର ମଧ୍ୟ ନୁହେଁ ।"

"ନାଁ । ସେମାନେ ନିଜର ଗୁରୁତ୍ୱ ହରାଇଲେ । ଆମେ ଖାଲି ସେମାନଙ୍କୁ ଅତି ବଡ କରି ଧରିଛେ ।"

କ୍ୟାପ୍‌ଟେନ୍ ଉତ୍ତମ ଦୀର୍ଘଶ୍ୱାସ ଛାଡିଲେ । ସେ ପିଲାମାନଙ୍କୁ ଅତି ନିକଟରୁ ଦେଖିଛନ୍ତି । ସେ ସେମାନଙ୍କୁ ଦୁଃଖ ପାଇଥିଲେ କିନ୍ତୁ ସେମାନେ କ'ଣ ତାଙ୍କୁ ଭଲ ପାଇଥିଲେ ?

"ମୂଷାମାନଙ୍କ ଉପରେ ପରୀକ୍ଷା କରାଯାଇ ଯେଉଁ ସୁଫଳ ମିଳିଥିଲା, ପିଲାମାନଙ୍କ ଉପରେ ପ୍ରୟୋଗ କରାଯାଇଥିଲା । ଆମେ ଆଉ ତାଙ୍କୁ ଅନ୍ୟତ୍ର ପ୍ରୟୋଗ କରି ନାହୁଁ । ଅବଶ୍ୟ କାହିଁକି ହୋଇ ନାହିଁ, ଆମେ କହି ପାରିବୁ ନାହିଁ । ସମ୍ଭବତଃ ଆମେ ଏଥିପାଇଁ ପ୍ରସ୍ତୁତ ନୋହୁଁ ।"

ଏଥି ଭିତରେ ତରଙ୍ଗିଣୀ ଓ ଲକ୍ଷ୍ମଣ ଥିବା ଉପଗ୍ରହର ଅବସ୍ଥା କ'ଣ ହେଲା ? ନୈନିତାଲର ଉପଗ୍ରହ ନିରୀକ୍ଷଣ କେନ୍ଦ୍ର ଜଣାଇଲା ଯେ ଦୁଇଟି ଯାକ ପିଲା ବର୍ତ୍ତମାନ ପୃଥିବୀର କକ୍ଷ-ପଥର ବାହାରକୁ ଚାଲି ଯାଉଛନ୍ତି । ଏହା ପୁଣି ଉପଗ୍ରହକୁ ନିରୀକ୍ଷଣ କରିବା ସତ୍ତ୍ୱେ ଘଟିଛି ।

ଏବେ ଗୋଟିଏ ବାର୍ତ୍ତା ମିଳିଲା । ତରଙ୍ଗିଣୀ କହିଲା ଯେ ସେ ଓ ଲକ୍ଷ୍ମଣ ପୃଥିବୀର ପ୍ରକୃତିରେ ଭାରସାମ୍ୟ ରକ୍ଷା କରିବା ପାଇଁ ଯାହା ଦରକାର କରିବେ । ସେମାନେ ଖୁସି ଯେ ଏବେ ତୈଳ ପ୍ରଦୂଷଣ ସମସ୍ୟାର ସମାଧାନ ହୋଇ ଯାଇଛି । ଯଦିଓ ଏବେ କେତେକ ଦେଶରେ ଆଣବିକ ଅସ୍ତ୍ରଶସ୍ତ୍ର ବହୁ ପରିମାଣରେ ରହିଛି । ବର୍ତ୍ତମାନ କିନ୍ତୁ ପୃଥିବୀବାସୀମାନେ ନିଜେ ଏହି ସମସ୍ୟାର ସମାଧାନ କରନ୍ତୁ । ସେମାନେ କାହିଁକି ସନ୍ତ୍ରାସବାଦୀମାନଙ୍କ କଥାରେ ତିଳକୁ ତାଳ କରୁଛନ୍ତି ? "ସେମାନେ କେବଳ ଅଳ୍ପ କେତେ ଜଣଙ୍କୁ ମାରିବେ । ତାହା କିଛି ନୁହେଁ ।"

ଯେତେବେଳେ ସେମାନଙ୍କ ପାଖରେ ଏହି ବାର୍ତ୍ତା ପହଞ୍ଚିଲା, ଡକ୍ଟର ଧନନ୍ତ୍ରୀ କ୍ୟାପ୍‌ଟେନ୍ ଉତ୍ତମଙ୍କୁ କହିଲେ, "ସେଠାରେ ତାର ସାଧାରଣ ଅନୁଭୂତିରେ ବାଧା ଆସିଲା ସେମାନେ ଭୟଭୀତ ହୋଇଥିଲେ କୌଣସି ମତେ ସନ୍ତ୍ରାସବାଦୀଙ୍କ କବଳରୁ ରକ୍ଷା ପାଇ ନ ଥା'ନ୍ତେ ।"





ସେହି ବାର୍ତ୍ତା ପୁଣି କହି ଚାଲିଲା, "ଏବେ ଆମେ ଆପଣଙ୍କୁ ଏକଥା ବିଚାର କରିବାକୁ ଛାଡ଼ି ଦେଉଛୁ । ଲକ୍ଷ ଲକ୍ଷ ଲୋକଙ୍କୁ ମାରି ଦେବା ଦୁଃଖର କଥା । ଏହା ଫଳରେ ଭାରସାମ୍ୟ ଲୋପ ପାଇବ । ଏହାକୁ ଦେଖି, ବିଶ୍ୱ ବ୍ରହ୍ମାଣ୍ଡର ଅନ୍ୟ କେତେକ ସଭ୍ୟତା ପରିଦର୍ଶନରେ ଆମେ ବାହାରିଲୁ । ପୃଥିବୀବାସୀଙ୍କଠାରୁ ସେମାନଙ୍କର ବିଚାର ଜ୍ଞାନ ଅଧିକ ଥିବ । ସେମାନେ ପ୍ରକୃତି ସହିତ ଭାରସାମ୍ୟ ରକ୍ଷା କରି ଚାଲିଥିବେ ।

କ୍ୟାପ୍ଟେନ୍ ଉତ୍ତମ କହିଲେ—'ହଁ ମୁଁ ସେୟା ଆଶା କରୁଛି । ମୁଁ ସେୟା ଆଶା କରୁଛି ।"

ଦଶ ବର୍ଷ ବିତିଗଲା । ପୃଥିବୀବାସୀମାନେ ସେମାନଙ୍କ ସମସ୍ୟାରେ ଏବେ ବି ବ୍ୟସ୍ତ । କିନ୍ତୁ ସବୁ ସମସ୍ୟା ସଦିଚ୍ଛା ଓ ବୁଦ୍ଧିମତ୍ତା ସାହାଯ୍ୟରେ ସମାଧାନ କରାଯାଇ ପାରିବ । ପିଲାମାନଙ୍କଠାରୁ ଆଉ କିଛି ଶୁଣାଗଲା ନାହିଁ । କିନ୍ତୁ ଠିକ୍ 12 ବର୍ଷ ପରେ ମାଇକ୍ରୋଓଏଭରେ ସଂଖ୍ୟା ବୃଦ୍ଧି ଘଟିଲା । ଅର୍ଦ୍ଧିଠାରେ ନୂଆ ବଡ ଓବନ ଥାଳୀ ପାଖରେ ସୂଚନା ମିଳିଲା । ଏହା ଦୃଢ଼ ଭାବରେ ଜଣାଗଲା ଯେ ମାଇକ୍ରୋଓଏଭ୍ ବଢ଼ିବାର କାରଣ ହେଲା ବାର୍ଣ୍ଣାଡ଼ ନକ୍ଷତ୍ର ପାଖରେ ଏକ ଗ୍ରହର ଉପସ୍ଥିତି । ପୃଥିବୀରୁ ପଠାଯାଇଥିବା ଦ୍ୱିତୀୟ ବାର୍ତ୍ତାର ଉତ୍ତର ଆସିପାରେ ।

ବାର୍ତ୍ତାର ଠାର ଭାଷାକୁ ବିଶ୍ଳେଷଣ କରାଯିବାରୁ ଜଣା ପଡ଼ିଲା ଯେ ଦୂର ଗ୍ରହରେ ଜୀବନର ବର୍ଣ୍ଣନା ରହିଛି । ପୃଥିବୀ ପରି ଏହା ଅଙ୍ଗାରକାମ୍ଳ ଆଧାରିତ । କିନ୍ତୁ ସେଠାରେ ଥିବା ଦ୍ୱିପଦ ଜୀବମାନଙ୍କ ଆଖି ଆମ ପିଲାଙ୍କ ଆଖି ପରି କେବଳ ଅବଲୋହିତ ରଙ୍ଗକୁ ଭଲ ଭାବରେ ଦେଖିପାରେ ।



ମାତ୍ର ସେମାନଙ୍କର ମସ୍ତିଷ୍କ ପୃଥିବୀର ପ୍ରାଣୀମାନଙ୍କ ମସ୍ତିଷ୍କ ଠାରୁ ଅଧିକ ଉନ୍ନତ ଜଣା ପଡୁଛି । ଏହି ଅବଲୋହିତ ଗ୍ରହକୁ ଭଲ ଭାବରେ ପର୍ଯ୍ୟବେକ୍ଷଣ କରିବା ପାଇଁ ଦୁଇଟି ମନୁଷ୍ୟହୀନ ଅବଲୋହିତ କ୍ୟାମେରା ସଜ୍ଜିତ ମହାକାଶଯାନ ପଠାଇବାକୁ ସ୍ଥିର ହେଲା । ହଜିଥିବା ଦୁଇ ପିଲା, ତରଙ୍ଗିଣୀ ଓ ଲକ୍ଷ୍ମଣଙ୍କ ନାମରେ ଏହି ଦୁଇଟି ଯାନର ନାମକରଣ କରାଯିବ ।

ମାତ୍ର ପିଲାମାନେ କ'ଣ ସତ୍ୟରେ ହଜି ଗଲେ ? ଏବଂ ଏହା କ'ଣ ଜଣାଉଛି ଯେ ଯେଉଁ ଉଲ୍‌କାପିଣ୍ଡ ପ୍ରଥମ ଓ ଦ୍ୱିତୀୟ ବାର୍ତ୍ତା ଘେନି ଆସି ଥିଲା, ସେଗୁଡିକ ସେହି ଅବଲୋହିତ ଗ୍ରହରୁ ଆସି ନ ଥିଲା କି ? ଏଠାରେ ଅଧିକ ବୁଦ୍ଧିଜାତ କରାଇବା ଉଦ୍ଦେଶ୍ୟରେ ଅଜଣା କୌଣସି ଶକ୍ତି ଏହା ପଠାଇ ନ ଥିଲା କି ? କ୍ୟାପ୍ଟେନ୍ ଉତ୍ତମ ଯେ କି ବର୍ତ୍ତମାନ ବୁଢା ହୋଇ ଗଲେଣି, ଭାବିଲେ-ପିଲାମାନେ ହଜି ଯାଇ ନାହାନ୍ତି । ଯେତେବେଳେ ପୃଥିବୀର ଅବସ୍ଥା ବେଶି ଖରାପ ହୋଇ ପଡ଼ିବ, ତରଙ୍ଗିଣୀ ଓ ଲକ୍ଷ୍ମଣ ଆମ୍ଭମାନଙ୍କ ପାଖକୁ ପୁଣି ଫେରି ଆସିବେ ।



